# ମହାରାଜା ଶ୍ରୀରାମଚନ୍ଦ୍ର

ଲେଖକ—ଶ୍ରୀ ଦିବ୍ୟସିଂହ ପାଣିଗ୍ରାହୀ ବି. ଏଲ.

ତୃତୀୟ ସଂସ୍କରଣ

୧୯୩୭

ପ୍ରକାଶକ

ଶ୍ରୀ ଉମାଚରଣ ମହାନ୍ତି

ପ୍ରୋପ୍ରାଇଟର, କଟକ ପବ୍ଲିଶିଙ୍ଗ୍ ହାଉସ୍

ନୟାସଡ଼କ, ପୋ: ଅ: ଚାନ୍ଦନୀଚୌକ

କଟକ

ମୂଲ୍ୟ ଆଠଅଣା ମାତ୍ର

# ଭୂମିକା



ଓଡ଼ିଶାର ଆଦର୍ଶ ନରପତି ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବଙ୍କ ଜୀବନ-ଚରିତ ଅଜ ସୁଦ୍ଧା ଓଡ଼ିଆରେ ପ୍ରକାଶିତ ହୋଇ ନାହିଁ, ଏହା ଆମ୍ଭମାନଙ୍କ ପକ୍ଷରେ ପ୍ରଶଂସାର କଥା ନୁହେ। ଓଡ଼ିଆ ସାହିତ୍ୟ ପ୍ରଚାର ସଙ୍ଘ ଉଦ୍ୟମରେ ଶ୍ରୀମାନ୍ ଅଲେଖପ୍ରସାଦ ଦାସ ମହାରାଜାଙ୍କ ସମ୍ବନ୍ଧରେ କେତେକ ତଥ୍ୟ ସଂଗ୍ରହ କରିଥିଲେ। ମୁଁ ଅନେକ ସ୍ଥଳରେ ତାହାର ଏବଂ ଶ୍ରୀଯୁକ୍ତ ଶୈଳେନ୍ଦ୍ରନାଥ ସରକାର ଏମ.ଏ.ଙ୍କ ଲିଖିତ ମହାରାଜାଙ୍କ ଚରିତ ଇଂରାଜୀ ପୁସ୍ତକର ଆଶ୍ରୟ ନେଇଅଛି। ଶ୍ରୀଯୁକ୍ତ ବାବୁ ଶଶିଭୂଷଣ ରାୟ ମହାଶୟ ଦୟା କରି ତାଙ୍କର ବହୁଯତ୍ନ ସମ୍ପାଦିତ ମହାରାଜାଙ୍କର କେତେକ ଖଣ୍ଡି ହସ୍ତଲିପି ପ୍ରଦାନ କରି ଯଥେଷ୍ଟ ସାହାଯ୍ୟ କରିଅଛନ୍ତି। ତେଣୁ ମୁଁ ଉକ୍ତ ମହାଶୟମାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଅଛି। ମହାରାଜାଙ୍କଦ୍ୱାରା ଲିଖିତ କେତେକ ପ୍ରବନ୍ଧ ଓ ଅଭିଭାଷଣ ମଧ୍ୟ ମୋର ସମ୍ବଳ ହୋଇଅଛି।

୰ଶ୍ରୀରାମଚନ୍ଦ୍ରଙ୍କ ଓ ସମସାମୟିକ ଅନେକ ପରିଚିତ ବ୍ୟକ୍ତି ବର୍ତ୍ତମାନ ଅଛନ୍ତି। ମୋର ସେମାନଙ୍କୁ ବିନୀତ ଅନୁରୋଧ ଏହି ପୁସ୍ତକରେ ମହାରାଜାଙ୍କ ସମ୍ବନ୍ଧରେ କୌଣସି ବିଶେଷ ବିଷୟର ଉଲ୍ଲେଖ ନ ଥିଲେ, କିମ୍ବା କୌଣସି ଭ୍ରମ ପ୍ରମାଦ ଥିବାର ପରିଲକ୍ଷିତ ହେଲେ, ଅନୁଗ୍ରହ କରି ଜଣାଇବେ। ତଦନୁସାରେ ପରବର୍ତ୍ତୀ ସଂସ୍କରଣରେ ଏହି ପୁସ୍ତକ ପରିବର୍ତ୍ତିତ ବା ପରିବର୍ଦ୍ଧିତ କରାଯାଇ ପାରିବ।

ଏହି ପୁସ୍ତକ ପାଠଦ୍ୱାରା କାହାରି ମନରେ କ୍ଷଣକପାଇଁ ମୃତ ଜାତୀୟ ଜୀବନର ସ୍ଫୁରଣ ହେଲେ ମୁଁ ମୋର ଶ୍ରମ ସଫଳ ଜ୍ଞାନ କରିବି।

ପୁରୀ
୧୦।୮।୧୯୨୬

ଲେଖକ

# ଦ୍ୱିତୀୟ ସଂସ୍କରଣର ବିଜ୍ଞାପନ



ଏତେ ଶୀଘ୍ର ଦ୍ୱିତୀୟ ସଂସ୍କରଣ ହେବାର ସମ୍ଭାବନା ମନରେ ପୋଷଣ କରିବା ସାଧ୍ୟାତୀତ ଥିଲା । ପ୍ରଥମ ସଂସ୍କରଣର ପ୍ରାର୍ଥନା ଫଳରେ କାହାରିଠାରୁ କୌଣସି ସାହାଯ୍ୟ ପାଇବାର ସୁଯୋଗ ଘଟି ନାହିଁ । ବାରିପଦା ଦର୍ଶନ ପ୍ରଭୁଙ୍କ କରୁଣାରୁ ଘଟିଲା । ଏ ମଧ୍ୟରେ ପୁଣି ଲେଫ୍ଟେନେଣ୍ଟ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଦେବଙ୍କ ଆକସ୍ମିକ ମୃତ୍ୟୁ ସମ୍ବାଦ । ଏକାଦଶ ଅଧ୍ୟାୟଟି ଏହି ଅବସରରେ ଯୋଗ ହେଲା । ତଦ୍‌ବ୍ୟତୀତ, କେତେକ ସାମାନ୍ୟ ପରିବର୍ତ୍ତନ ଛଡ଼ା ବିଶେଷ କିଛି କରି ହେଲା ନାହିଁ । ପୁସ୍ତକର ଆକାର ଦୃଷ୍ଟିରେ ମୂଲ୍ୟ କିଞ୍ଚିତ୍ ବୃଦ୍ଧି କରିବାକୁ ହେଲା ।

ପୁରୀ
୧୭ । ୪ । ୨୮

ଲେଖକ

# ସୂଚୀ









ସ୍ୱର୍ଗୀୟ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ

# ମହାରାଜା ଶ୍ରୀରାମଚନ୍ଦ୍ର



## ପ୍ରଥମ ଅଧ୍ୟାୟ



### ରାଜ୍ୟ ଓ ବଂଶ ପରିଚୟ

ନୈସର୍ଗିକ ସୁଷମା-ମଣ୍ଡିତ ମୟୂରଭଞ୍ଜ ଏକ ବିଶାଳ ରାଜ୍ୟ । କାଳର ଅପ୍ରତିହତ ଗତିରୋଧ କରି ଆଦି ଯୁଗର ସେହି ପର୍ବତମାଳା, ସ୍ୱଚ୍ଛ ରୁଦ୍ର-ସୁନ୍ଦର ଜଳପ୍ରପାତ, କଳକଳନିନାଦିନୀ ନଦୀ ଓ ଅଗଣନୀୟ ବନ୍ୟ-ଜୀବଜନ୍ତୁ-ମୁଖରିତ ମନୋହର କାନନରାଜି ମୟୂରଭଞ୍ଜକୁ କବି ଓ ଦର୍ଶକର ଚିରଆଦରଣୀୟ କରି ରଖିଅଛି । ଏପରି ଅବସ୍ଥା ମଧ୍ୟରେ ମନୁଷ୍ୟର ମନ ସେହି ଚିରଉଦାର, ଅତୁଳନୀୟ ସୌନ୍ଦର୍ଯ୍ୟର ଆଧାର ସର୍ବନିୟନ୍ତାଙ୍କ ଆଡ଼କୁ ସ୍ୱତଃ ପ୍ରଧାବିତ ହୁଏ ।

ପ୍ରାକୃତିକ ସୁଷମା ସଙ୍ଗେ ମନୁଷ୍ୟର ନିତ୍ୟବ୍ୟବହାର୍ଯ୍ୟ ପାର୍ଥିବ ପଦାର୍ଥର ଉପାଦାନସଂଯୋଗ ମୟୂରଭଞ୍ଜରେ ମଣିକାଞ୍ଚନର ଯୋଗ । ଶିମିଳିପାଳ ପର୍ବତମାଳାର ଲୌହ ଓ ଅଭ୍ର, ସ୍ଲେଟ ଓ ବାସନ ହେବାର ପଥର ଓ ସୁବର୍ଣ୍ଣରେଖା, ଖରକାୟୀ ଓ ବଗ୍ଧା ନଦୀ ବାଲିର ସ୍ୱର୍ଣ୍ଣରେଣୁ ମୟୂରଭଞ୍ଜର ଖନିଜ ମଧ୍ୟରେ ସର୍ବଶ୍ରେଷ୍ଠ । ଶିମିଳିପାଳ ଓ ଅନ୍ୟାନ୍ୟ ପାର୍ବତ ଅଞ୍ଚଳରେ ଶାଳ, ପିଆଶାଳ, ଶିଶୁ, ଗମ୍ଭାରି ଓ ମହାଲିମ୍ବ ଆଦି

ମୂଲ୍ୟବାନ୍ ବୃକ୍ଷ ବହୁଳ ଜନ୍ମେ । ଏହା ଛଡ଼ା ଝୁଣା, ଶିମିଳିତୁଳା ଓ ଚମଡ଼ା କଷାଇବାର ଗଛ ମଧ୍ୟ ଏଠାରେ ଅପର୍ଯ୍ୟାପ୍ତ ।

ମୟୂରଭଞ୍ଜ ଓଡ଼ିଶାର ଦେଶୀୟ ରାଜ୍ୟମାନଙ୍କ ମଧ୍ୟରେ ସର୍ବାଂଶରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଅଛି । ଏହାର ଆୟତନ ୪୨୪୩ ବର୍ଗମାଇଲ ଏବଂ ଲୋକସଂଖ୍ୟା ୮,୮୯,୬୦୩ । ଏହାର ଉତ୍ତରରେ ମେଦିନୀପୁର ଓ ସିଂହଭୂମ ଜିଲ୍ଲା, ପୂର୍ବରେ ମେଦିନୀପୁର ଓ ବାଲେଶ୍ୱର, ଦକ୍ଷିଣରେ ବାଲେଶ୍ୱର ଓ ନୀଳଗିରି ରାଜ୍ୟ ଏବଂ ପଶ୍ଚିମରେ ସିଂହଭୂମ ଓ କେନ୍ଦୁଝର ରାଜ୍ୟ । ଲୋକସଂଖ୍ୟାର ଶତକଡ଼ା ପ୍ରାୟ ୬୦ ଜଣ ଆଦିମ ଅନାର୍ଯ୍ୟ ଜାତି; ଯଥା:—କୋଲ୍ହ, ସାନ୍ତାଳ, ଭୂମିଜ ଇତ୍ୟାଦି ।

ଏହା ଛଡ଼ା ଭୂୟାଁ, ବାଥୁଡ଼ି ଓ ପାଣ ଜାତି ମଧ୍ୟ ଅଛନ୍ତି । ବ୍ରାହ୍ମଣ, କରଣ ଆଦିର ସଂଖ୍ୟା ଖୁବ୍ କମ୍ । ମୟୂରଭଞ୍ଜର ସାଧାରଣ ଚଳିତ ଭାଷା ଓଡ଼ିଆ । କୋଲ୍ହ, ସାନ୍ତାଳ ଓ ଭୂମିଜ ଜାତିମାନେ ସେମାନଙ୍କର ସ୍ୱତନ୍ତ୍ର ଭାଷା "ଠାର" ବ୍ୟବହାର କରନ୍ତି ।

କୋଲ୍ହ, ସାନ୍ତାଳ, ଭୂୟାଁ ଓ ଭୂମିଜ ଜାତିମାନେ ସାଧାରଣତଃ ବଡ଼ ସରଳ, ସତ୍ୟବାଦୀ ଓ ବିନୟୀ । ମାତ୍ର ଯେଉଁମାନେ ସହରକୁ ଆସି ଆଧୁନିକ ସଭ୍ୟ ଲୋକମାନଙ୍କ ସଙ୍ଗେ କାରବାର କରୁଛନ୍ତି, ସେମାନେ ମିଥ୍ୟାବାଦୀ ଓ ପ୍ରବଞ୍ଚକ । ଏମାନଙ୍କୁ ଦେଖିଲେ ଆଧୁନିକ ସଭ୍ୟତା ଯେପରି କଷ୍ଟି ପଥରରେ ପରୀକ୍ଷିତ ହୋଇ ଜାଲ୍ ପ୍ରମାଣିତ ହେଉଅଛି ବୋଲି ମନେ ହୁଏ ।

ମୟୂରଭଞ୍ଜର ବଂଶାବଳୀ ବ୍ୟତୀତ କୌଣସି ଧାରାବାହିକ ଲିଖିତ ଇତିହାସ ନ ଥିଲା । କିମ୍ବଦନ୍ତୀବର୍ଣ୍ଣିତ ବିଷୟରୁ ଯେତେ ଦୂର ଜଣାଯାଏ, ଅନ୍ୟୂନ ୧୩୦୦ ବର୍ଷ ପୂର୍ବେ ଏହି ରାଜ୍ୟ ସ୍ଥାପିତ ହୋଇଥିଲା । ଭଞ୍ଜବଂଶ

ଅତି ପ୍ରାଚୀନ ବଂଶ । କାହାର କାହାର ମତରେ ଏ ବଂଶ ମୌର୍ଯ୍ୟବଂଶ-ସମ୍ଭୂତ । କେବଳ ତମ୍ବାପଟ୍ଟାଦ୍ୱାରା ପ୍ରମାଣିତ ହୋଇଅଛି ଯେ, ଭଞ୍ଜ-ବଂଶ ୧୩୦୦ ବର୍ଷ ପୂର୍ବେ ଓଡ଼ିଶାରେ ରାଜପଣ କରୁଥିଲେ । ଭଞ୍ଜ-ବଂଶର ରାଜଚିହ୍ନ ମୟୂର ଅଟେ ।

ଏହି ଭଞ୍ଜବଂଶୀୟ ରାଜକୁମାରମାନେ କେନ୍ଦୁଝର, କନିକା, ଦଶପଲ୍ଲା ଓ ବୌଦ ରାଜ୍ୟମାନ ସ୍ଥାପନ କରି ପୃଥକ୍ ଭାବରେ ରାଜତ୍ୱ କରିଥିଲେ । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ସମୟରେ ମୟୂରଭଞ୍ଜ ମରହଟ୍ଟାମାନଙ୍କ ବିରୋଧରେ ଇଂରେଜ-ମାନଙ୍କୁ ସାହାଯ୍ୟ କରିଥିଲେ । ତ୍ରିବିକ୍ରମ ଭଞ୍ଜ ୧୮୧୦ ମସିହାରେ ସିଂହାସନ ଆରୋହଣ କରି ୧୮୧୨ ଖ୍ରୀଷ୍ଟାବ୍ଦରେ ଇଷ୍ଟ ଇଣ୍ଡିଆ କମ୍ପାନୀ ସହିତ କର ଦେବାପାଇଁ ସନ୍ଧି ସୂତ୍ରରେ ଆବଦ୍ଧ ହୋଇଥିଲେ । ଏହି ସନ୍ଧିସର୍ତ୍ତରେ ମୟୂରଭଞ୍ଜ ଇଷ୍ଟ ଇଣ୍ଡିଆ କମ୍ପାନୀଙ୍କୁ ବାର୍ଷିକ ଟ ୧୦୦୧୮ କର ଦେବାର ସ୍ଥିର ହୋଇଥିଲା । ତ୍ରିବିକ୍ରମ ଭଞ୍ଜ ୧୮୨୯ ମସିହାରେ ପରଲୋକ ଗମନ କରିବାରୁ ତାଙ୍କ ପୁତ୍ର ଯଦୁନାଥ ଭଞ୍ଜ ରାଜା ହୋଇ ଆଉ ଥରେ ବ୍ରିଟିଶ ସରକାରଙ୍କ ସହିତ ସନ୍ଧି କରିଥିଲେ । ଏହାଙ୍କ ସମୟରେ ବ୍ରାହ୍ମଣଘାଟିର ସରବରାକାର ବିଦ୍ରୋହୀ ହୋଇ ଉଠିବାରୁ ବହୁ କଷ୍ଟରେ ବିଦ୍ରୋହ ଦମନ ହୋଇଥିଲା ଏବଂ ବ୍ରାହ୍ମଣଘାଟିର ଜମିଦାର ପରାସ୍ତ ହେବାରୁ ଇଲାକାଟି ରାଜାଙ୍କ ନିଜ କର୍ତ୍ତୃତ୍ୱାଧୀନରେ ଆସିଲା । ଯଦୁନାଥ ଭଞ୍ଜଙ୍କ ପରେ ତାଙ୍କ ପୁତ୍ର ଶ୍ରୀନାଥ ଭଞ୍ଜ ୧୮୬୩ ଖ୍ରୀଷ୍ଟାବ୍ଦରେ ରାଜ୍ୟଭାର ଗ୍ରହଣ କଲେ ।

ରାଜା ଶ୍ରୀନାଥଚନ୍ଦ୍ର ଭଞ୍ଜ ସରଳ ଓ ଦୟାଳୁ ଥିଲେ । ରାଜ୍ୟ-ଶାସନରେ ତାଙ୍କର ସେପରି ଦକ୍ଷତା ନ ଥିଲା । ବିଳାସପ୍ରିୟ ଓ ଅସଚ୍ଚରିତ୍ର ପାର୍ଶ୍ୱଚରମାନଙ୍କ ଉପରେ ଶାସନଭାର ଦେବାରୁ ରାଜ୍ୟଶାସନ ବିଶୃଙ୍ଖଳ

ହୋଇ ପଡ଼ିଲ । ଶ୍ରୀନାଥଚନ୍ଦ୍ର ଭଞ୍ଜ ଅପୁତ୍ରକ ଥିବାରୁ ତାଙ୍କ ମୃତ୍ୟୁ ପରେ ତାଙ୍କ କନିଷ୍ଠ ଭ୍ରାତା ସୀତାନାଥ ଭଞ୍ଜ ଛୋଟରାୟଙ୍କ ଜ୍ୟେଷ୍ଠ ପୁତ୍ର କୃଷ୍ଣଚନ୍ଦ୍ର ଭଞ୍ଜ ରାଜା ହୋଇଥିଲେ ।

ରାଜା ଶ୍ରୀନାଥଚନ୍ଦ୍ର ୧୮୬୮ ଖ୍ରୀଷ୍ଟାବ୍ଦରେ ପରଲୋକ ପ୍ରାପ୍ତ ହେବାରୁ କୃଷ୍ଣଚନ୍ଦ୍ର ଭଞ୍ଜ ରାଜଗାଦିରେ ବସିଲେ । ତେତେବେଳକୁ ତାଙ୍କର ବୟଃକ୍ରମ ୧୮ ବର୍ଷ । ସେ ଇଂରାଜୀ ଜାଣି ନ ଥିଲେ ସୁଦ୍ଧା ରାଜ୍ୟ-ପରିଚାଳନ ବିଷୟରେ ଧୁରନ୍ଧର ଥିଲେ । କୃଷ୍ଣଚନ୍ଦ୍ରଙ୍କ ରାଜତ୍ୱ ଆରମ୍ଭରେ ତାଙ୍କ ବିରୁଦ୍ଧରେ ଘୋର ଷଡ଼୍‌ଯନ୍ତ୍ରର ସୂତ୍ରପାତ ହେଲା । ଶ୍ରୀନାଥଚନ୍ଦ୍ରଙ୍କ ରାଣୀ କେତେକ କୁଟିଳପ୍ରକୃତିର ଲୋକଙ୍କ ସାହାଯ୍ୟରେ କୃଷ୍ଣଚନ୍ଦ୍ରଙ୍କୁ ରାଜ୍ୟଚ୍ୟୁତ କରିବାର ପ୍ରୟାସ କରିଥିଲେ । ଯୁବକ କୃଷ୍ଣଚନ୍ଦ୍ର ଏପରି ଦକ୍ଷତା ଓ ସହିଷ୍ଣୁତା ସହ ଅବିଚଳିତ-ଚିତ୍ତରେ ରାଜକାର୍ଯ୍ୟ ପରିଚାଳନ କରିବାକୁ ଲାଗିଲେ ଯେ, ଏହି ସବୁ ଷଡ଼୍‌ଯନ୍ତ୍ର କ୍ରମେ ଅନ୍ତର୍ହିତ ହୋଇଗଲା ଏବଂ ଯେଉଁମାନେ ତାଙ୍କର ଶତ୍ରୁତାଚରଣ କରୁଥିଲେ, ସେମାନେ ତାଙ୍କର ବଶୀଭୂତ ହୋଇଗଲେ, ଏପରି କି ଶ୍ରୀନାଥଚନ୍ଦ୍ରଙ୍କ ବିଧବା ରାଣୀ ମଧ୍ୟ ମହାରାଜା କୃଷ୍ଣଚନ୍ଦ୍ରଙ୍କ ପ୍ରତି ସ୍ନେହ ଓ ଶ୍ରଦ୍ଧା ଜ୍ଞାପନ କରିବାକୁ ତ୍ରୁଟି କରି ନ ଥିଲେ । ଏ ସମସ୍ତ କାର୍ଯ୍ୟରେ ପୁଣ୍ୟଶ୍ଳୋକ ଟି.ଇ. ରେଭେନ୍‌ସା ସାହେବ ତାଙ୍କର ପ୍ରଧାନ ସହାୟ, ପରାମର୍ଶଦାତା ଓ ବନ୍ଧୁ ଥିଲେ । କୃଷ୍ଣଚନ୍ଦ୍ର କଟକ ଉଚ୍ଚ ଇଂରାଜୀ ବିଦ୍ୟାଳୟକୁ ଏକକାଳୀନ ଟ ୨୭୦୦୦୧ ଦାନ କରିଥିଲେ । ଏହାରି ଫଳରେ ସ୍କୁଲଟି କଲେଜରେ ପରିଣତ ହୋଇ ପାରିଥିଲା । ଆଜି ଓଡ଼ିଆର ଚିରଆଦରଣୀୟ ଏକମାତ୍ର ବିଦ୍ୟାପୀଠ ରେଭେନ୍‌ସା କଲେଜ ମୂଳରେ ମହାରାଜା କୃଷ୍ଣଚନ୍ଦ୍ରଙ୍କ ଦାନ ନିହିତ । ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଙ୍କ ପୂର୍ବରୁ ମୟୂରଭଞ୍ଜରେ କୌଣସି ବ୍ରିଟିଶ ଶାସନପ୍ରଣାଳୀ ନ ଥିଲା । ବିଚାରବିଭାଗ ମରହଟ୍ଟୀ

ଭାବରେ ଥିଲା । କୌଣସି ବିଭାଗର କାର୍ଯ୍ୟପ୍ରଣାଳୀ ଲିପିବଦ୍ଧ ନ ହୋଇ ମୌଖିକ ହୁକୁମ ପ୍ରଚୁର ହେଉଥିଲା । ଫଳରେ ରାଜ୍ୟର ଦେବାନ୍ ଓ ଅନ୍ୟାନ୍ୟ କର୍ମଚାରୀମାନେ ସର୍ବେସର୍ବା ଥିଲେ । ମହାରାଜା କୃଷ୍ଣଚନ୍ଦ୍ର ବ୍ରିଟିଶ ଭାରତର ସମସ୍ତ ବିଭାଗ ସୃଷ୍ଟି କରିବାକୁ ଲାଗିଲେ । ଫୌଜଦାରୀ ସିରିସରି ଓ ଦେବାନୀ ଅଦାଲତ ସୃଷ୍ଟି ହେଲା । ରାଜସରକାର ତରଫରୁ ଓକିଲ ନିଯୁକ୍ତ ହେଲେ । ପକ୍ଷମାନେ ଓକିଲ, ମୁକ୍ତାର ନିଯୁକ୍ତ କରିବାର ଅନୁମତି ପାଇଲେ । ନିଜେ ମହାରାଜା ସାହେବ ମୋକଦ୍ଦମାର ଅପୀଲ ଶୁଣିବାର ବ୍ୟବସ୍ଥା ହେଲା । ପ୍ରତ୍ୟେକ ପ୍ରଗଣାରେ ପୁଲିସ ଥାନା ସ୍ଥାପିତ ହୋଇ ଜଣେ ଜଣେ ସରଦାରଙ୍କ ଅଧୀନରେ ଦିଆଗଲା । ମହାରାଜା କୃଷ୍ଣଚନ୍ଦ୍ର ଆଧୁନିକମତେ କାରାଗୃହ ଓ ହାଜତ୍ ନିର୍ମାଣ କରାଇଥିଲେ; କାରାଦଣ୍ଡ ଭୋଗ କରୁଥିବା ଲୋକମାନଙ୍କର ବିଧିମତେ ଖାଦ୍ୟପେୟର ବନ୍ଦୋବସ୍ତ କରାଗଲା । ପୂର୍ବେ ପ୍ରଧାନମାନେ ରାଜସ୍ୱ ଆଦାୟରେ ସର୍ବେସର୍ବା ଥିଲେ; ସେମାନେ ଇଚ୍ଛାନୁସାରେ ଖଜଣା ଆଦାୟ କରି ତହିଁର କେତେକାଂଶ ରାଜସରକାରଙ୍କୁ ଦେଉଥିଲେ । ଜମି ମାପ କରିବାର କୌଣସି ପ୍ରଥା ନ ଥିଲା । ମହାରାଜା କୃଷ୍ଣଚନ୍ଦ୍ର ସର୍ବପ୍ରଥମେ ରାଜସ୍ୱ ଆଦାୟର ସୁବନ୍ଦୋବସ୍ତ କରିଥିଲେ ଏବଂ ନଳ, ଭର୍ତ୍ତିଂ ରିଅ ଅନୁସାରେ ଜରିବ ଜମାବନ୍ଦୀ କରାଇଥିଲେ ।

ରାଜ୍ୟରେ ଏହି ସମସ୍ତ ସୁଶାସନ ପ୍ରଚଳନ କରାଇବା ଫଳରେ ପ୍ରଜାମାନେ ମହା ଆନନ୍ଦିତ ହୋଇଥିଲେ ଏବଂ ଭାରତ ସରକାର ତାଙ୍କ ଉପରେ ସନ୍ତୁଷ୍ଟ ହୋଇ ୧୮୭୭ ମସିହାରେ ତାଙ୍କୁ 'ମହାରାଜା' ଉପାଧିରେ ଭୂଷିତ କରିଥିଲେ ।

ମହାରାଜା କୃଷ୍ଣଚନ୍ଦ୍ର ମୟୂରଭଞ୍ଜରେ ରାସ୍ତା ନିର୍ମାଣ ଓ ରାଜ-ସରକାରର ଗୃହ ନିର୍ମାଣ ଆଦି କାର୍ଯ୍ୟ ସକାଶେ ପୂର୍ତ୍ତବିଭାଗ ସର୍ବ-

ପ୍ରଥମେ ସୃଷ୍ଟି କରିଥିଲେ । ସେ ବାରିପଦାଠାରୁ ବାଲେଶ୍ୱର ଓ ବହଲଡ଼ା ପର୍ଯ୍ୟନ୍ତ ଦୁଇଗୋଟି ପ୍ରକାଣ୍ଡ ରାସ୍ତା ନିର୍ମାଣ କରାଇ ଯାଇଅଛନ୍ତି ।

ଶିକ୍ଷାବିଭାଗ ମଧ୍ୟ ତାଙ୍କ ଦୃଷ୍ଟିର ଅନ୍ତରାଳରେ ରହି ପାରି ନ ଥିଲା । ସେ ବାରିପଦାରେ ଗୋଟିଏ ଇଂରାଜି ବିଦ୍ୟାଳୟ ଏବଂ ମଫସଲରେ ଅନେକ ପ୍ରାଥମିକ ଓଡ଼ିଆ ପାଠଶାଳା ପ୍ରତିଷ୍ଠା କରିଥିଲେ । ଏହି ସବୁ ସ୍କୁଲରେ ଛାତ୍ରମାନେ ବିନା ବେତନରେ ପଢ଼ିବାର ସୁଯୋଗ ପାଉଥିଲେ । ମହାରାଜା କୃଷ୍ଣଚନ୍ଦ୍ର ବାରିପଦାରେ ଗୋଟିଏ ଦାତବ୍ୟ ଚିକିତ୍ସାଳୟ ସ୍ଥାପନ କରିଥିଲେ । ଏଲୋପାଥିକ ଓ ଆୟୁର୍ବେଦ ମତରେ ଔଷଧ ଦେବାର ବ୍ୟବସ୍ଥା ମଧ୍ୟ ହୋଇଥିଲା । ସେ ସର୍ବପ୍ରଥମେ ବାରିପଦାରେ ଗୋଟିଏ ଛାପାଖାନାର ସୃଷ୍ଟି କରିଥିଲେ ଓ ପୁସ୍ତକାଳୟ ମଧ୍ୟ ସ୍ଥାପନ କରିଥିଲେ ।



# ଦ୍ୱିତୀୟ ଅଧ୍ୟାୟ

## ବାଲ୍ୟାବସ୍ଥା ଓ ଶିକ୍ଷା

ପୂର୍ବବର୍ଣ୍ଣିତ ମୟୂରଭଞ୍ଜ ରାଜ୍ୟରେ ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜ ଦେବଙ୍କ ଔରସରେ ୧୮୭୦ ମସିହା ଡିସେମ୍ବର ମାସ ୧୭ ତାରିଖରେ ଅସ୍ମମାନଙ୍କ ଶ୍ରୀରାମଚନ୍ଦ୍ର ଭୂମିଷ୍ଠ ହୋଇଥିଲେ । ମୟୂରଭଞ୍ଜର ନଦ ନଦୀ, ବନ ପର୍ବତ, ବାୟୁ ଓ ଆକାଶରେ ଆନନ୍ଦର ଢେଉ ଖେଳି ବୁଲିଲା । ପୁର ପଲ୍ଲୀର ନରନାରୀ, ବାଳକ ବାଳିକା ଆହ୍ଲାଦରେ ମାତି ଉଠିଲେ । ପିତାମାତାଙ୍କ ଆନନ୍ଦ ପ୍ରକାଶ କରିବାର

ଭିକ୍ଷା ଖୋଜ ପାଇବା ଅସମ୍ଭବ । ଦୀନଦୁଃଖୀ ଧନ ଓ ପ୍ରଚୁର ଖାଦ୍ୟ-ପଦାର୍ଥ ପାଇଲେ; ବ୍ରାହ୍ମଣମାନେ କେହି ଭୂମି, କେହି କେହି ସ୍ୱର୍ଣ୍ଣ, ରୌପ୍ୟ ଓ ମୂଲ୍ୟବାନ୍ ବସ୍ତ୍ର ଉପହାର ପାଇଲେ । ଅଳ୍ପ କଥାରେ କହିଲେ, ରାଜ୍ୟରେ ଅପୂର୍ବ ଶ୍ରୀ ଆସି ବିରାଜମାନ କଲା ।

ପିତାମାତା ଓ ସ୍ୱଜନମାନଙ୍କ ଆଦର ଯତ୍ନରେ ଶ୍ରୀରାମଚନ୍ଦ୍ର ଲାଳିତ ପାଳିତ ହୋଇ କ୍ରମେ ବଢ଼ିବାକୁ ଲାଗିଲେ । ପାଞ୍ଚବର୍ଷ ବୟଃକ୍ରମ କାଳରେ ତାଙ୍କର ଚୂଡ଼ାକରଣ ଓ ବିଦ୍ୟାରମ୍ଭ ଯଥାବିଧି ସମ୍ପନ୍ନ ହେଲା । ସେ ସମୟରେ ଆଧୁନିକ ଧରଣର ସ୍କୁଲ୍ ନ ଥିଲା । ଶ୍ରୀରାମଚନ୍ଦ୍ର ଜଣେ ଅବଧାନଙ୍କ ନିକଟରେ ଖଡ଼ିପାଠ ପଢ଼ିବାକୁ ଲାଗିଲେ । ରାଜପୁତ୍ର ଇତର ପିଲାମାନଙ୍କ ପରି ମାଟିରେ ବସି ଖଡ଼ି ଧରି ବର୍ଣ୍ଣମାଳା ଶିକ୍ଷା କଲେ—ଆଜିକାଲି ଏପରି ଦୃଶ୍ୟ, ତଥା ଶ୍ରୀରାମଚନ୍ଦ୍ରଙ୍କ ପରି ଲୋକସେବକ ରାଜା ବିରଳ ।

ଶ୍ରୀରାମଚନ୍ଦ୍ର ଅତ୍ୟନ୍ତ ବାଲ୍ୟାବସ୍ଥାରୁ ମେଧାବୀ ବୋଲି ପରିଚିତ ଥିଲେ; ସେ ଯାହା ଶୁଣୁଥିଲେ, ତାହା ଭୁଲି ନ ଥିଲେ । ଦୁଇ ବର୍ଷ ମାତ୍ର ପଢ଼ି ସେ ଅବଧାନଙ୍କ ବିଦ୍ୟା ଅତିକ୍ରମ କରି ଦେଲେ । ତତ୍ପରେ ଜଣେ ଶିକ୍ଷକ ତାଙ୍କୁ ଇଂରାଜୀ ଓ ଓଡ଼ିଆ ପଢ଼ାଇବାକୁ ଆରମ୍ଭ କଲେ । ଏହିପରି ଆଉ ଦୁଇ ବର୍ଷ ଅତୀତ ହେବା ପରେ ତାଙ୍କୁ ବାରିପଦା ବିଦ୍ୟାଳୟରେ ଭର୍ତ୍ତି କରି ଦିଆଗଲା ଏବଂ ତତ୍କାଳୀନ ମୟୂରଭଞ୍ଜ ଓ କେଉଁଝର ସ୍କୁଲସମୂହର ପରିଦର୍ଶକ ପଣ୍ଡିତ ଶ୍ରୀ ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କୁ ଘରେ ସଂସ୍କୃତ ଓ ଅନ୍ୟାନ୍ୟ ବିଷୟ ପଢ଼ାଇବାପାଇଁ ନିଯୁକ୍ତ କରାଗଲା । ନଅ ବର୍ଷ ବୟସରେ ତାଙ୍କର ଉପନୟନ ଓ ବ୍ରତ ମହାସମାରୋହରେ ସମ୍ପନ୍ନ ହେଲା । ଏହିପରି ଆଉ ଦୁଇବର୍ଷ ମଧ୍ୟ ଅତୀତ ହେଲା ।

ଈଶ୍ୱରଙ୍କ ବିଧାନରେ ତାହାର ସମାନ ଯାଏ ନାହିଁ । ରାଜା ହୁଅନ୍ତୁ, ପ୍ରଜା ହୁଅନ୍ତୁ, ଧନୀ ହୁଅନ୍ତୁ ବା ଗରିବ ହୁଅନ୍ତୁ, କାଳଚକ୍ରର ଦାଉ ଅତିକ୍ରମ କରିବାର ଶକ୍ତି ମନୁଷ୍ୟ ହାତରେ ନାହିଁ । ସୁଷମା-ମଣ୍ଡିତ ସ୍ୱାସ୍ଥ୍ୟକର ମୟୂରଭଞ୍ଜରେ ବସନ୍ତ ରୋଗ ପ୍ରଚଣ୍ଡ ବେଗରେ ବ୍ୟାପିଗଲା । ଅନେକ ଲୋକ ମୃତ୍ୟୁର କରାଳ ଗ୍ରାସରେ ପଡ଼ିବାକୁ ଲାଗିଲେ । କ୍ରମେ ସମସ୍ତ ରାଜ୍ୟର ନୟନର ମଣି, ପିତା ମାତାଙ୍କ ଏକମାତ୍ର ଆଦରର ଧନ ଶ୍ରୀରାମଚନ୍ଦ୍ର ଏହି ରୋଗରେ ପୀଡ଼ିତ ହୋଇ ପଡ଼ିଲେ । ରାଜନଅରରେ ମହା-ଆତଙ୍କ ଉପସ୍ଥିତ ହେଲା । ପିତା ମାତା କାତର ହୋଇ ପଡ଼ିଲେ । ବିପଦର ପ୍ରକୃତ ମୂଳ୍ୟ ଈଶ୍ୱରଚରଣରେ । ମହାରାଜା କୃଷ୍ଣଚନ୍ଦ୍ର ଆହାର ନିଦ୍ରା ପରିତ୍ୟାଗ କରି ପୁତ୍ର ନିକଟରେ ଦିବାରାତ୍ର ବସି ରହିଲେ; ପୁତ୍ରର ଆରୋଗ୍ୟ ନିମିତ୍ତ ସେହି ରୋଗରେ ନିଜକୁ ବଳି ଦେବା ନିମନ୍ତେ ଭଗବାନଙ୍କଠାରେ ପ୍ରାର୍ଥନା କଲେ । ଜୀବନ ଉତ୍ସର୍ଗ ସ୍ନେହର କଷଟି ପଥର । ଭଗବାନ ଭକ୍ତର କାତର ପ୍ରାର୍ଥନା ମଞ୍ଜୁର କଲେ—ମହାରାଜା ବସନ୍ତରୋଗାକ୍ରାନ୍ତ ହେଲେ—ପୁତ୍ର ଶ୍ରୀରାମଚନ୍ଦ୍ର କ୍ରମେ ଆରୋଗ୍ୟ ଲାଭ କରିବାକୁ ଲାଗିଲେ । ଫଳରେ ମହାରାଜା ୧୮୮୨ ମସିହା ମଇ ମାସ ୨୯ ତାରିଖରେ ୩୪ ବର୍ଷ ବୟସରେ ରାଜପରିବାର ଓ ପ୍ରଜାବର୍ଗଙ୍କୁ ଶୋକ-ସାଗରରେ ଭସାଇ ଦେଇ ଶୋକଦୁଃଖର ଅତୀତ ସ୍ଥାନକୁ ଚାଲିଗଲେ । ବିପଦ ଆସିବାବେଳେ ଗୋଟିଏ ହୋଇ ଆସେ ନାହିଁ, ଡାଳ ମେଲି ବହୁମୁଖ ହୋଇ ଆସେ । ଏହି ଭୟାବହ ହୃଦୟବିଦାରକ ଘଟଣାର କେତେକ ଦିନ ପରେ ସେହି ରୋଗରେ ମହାରାଣୀ ମଧ୍ୟ ସଂସାର ଛାଡ଼ି ଚାଲିଗଲେ । ବାଳକ ଶ୍ରୀରାମଚନ୍ଦ୍ର ଏକସମୟରେ ପିତୃମାତୃହୀନ ହୋଇ ନିତାନ୍ତ ହତାଶ ହୋଇଗଲେ, କଅଣ କରିବାକୁ ହେବ, ସ୍ଥିର କରି ପାରିଲେ ନାହିଁ ।

ମହାରାଜା କୃଷ୍ଣଚନ୍ଦ୍ରଙ୍କ ମୃତ୍ୟୁ ପରେ ଜ୍ୟେଷ୍ଠ ପୁତ୍ର ନାବାଳକ ଥିବାରୁ ରାଜ୍ୟ ସରକାରଙ୍କ ହାତକୁ ଆସିଲା । ଶ୍ରୀରାମଚନ୍ଦ୍ରଙ୍କର ଦୁଇ ଭାଇ ଥିଲେ । ତାଙ୍କ ତଳ ଭାଇଙ୍କୁ ନୀଳଗିରି ରାଜ୍ୟର ଅପୁତ୍ରକ ରାଜା ପୋଷ୍ୟପୁତ୍ର କରି ନେଇଥିଲେ; ସାନ ଭାଇ ସେତେବେଳକୁ କେବଳ ଚାରିବର୍ଷର ଶିଶୁ । ପିତାଙ୍କ ମୃତ୍ୟୁ ପରେ ଶ୍ରୀରାମଚନ୍ଦ୍ର ଆଉ ଏକ ବର୍ଷ ବାରିପଦା ଇଂରାଜୀ ବିଦ୍ୟାଳୟରେ ପଢ଼ିବାକୁ ଲାଗିଲେ । ତତ୍ପରେ ପଣ୍ଡିତ ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ ତତ୍ତ୍ୱାବଧାନରେ ତାଙ୍କୁ କଟକରେ ପଢ଼ାଇବାପାଇଁ ସରକାର ସ୍ଥିର କଲେ । ତାଙ୍କର ପିତାମହୀ ନାତିକୁ ପାଖରୁ ଛାଡ଼ିଦେବାପାଇଁ ଘୋର ଆପତ୍ତି ଉଠାଇଥିଲେ, ମାତ୍ର ପରେ ବୁଝି ପାରି ସମ୍ମତି ଦେଇଥିଲେ । ରାଜ୍ୟ ଓ ରାଜପରିବାର ଛାଡ଼ି ବାଳକ ଶ୍ରୀରାମଚନ୍ଦ୍ର ବିଦ୍ୟାଶିକ୍ଷା କରିବାପାଇଁ କଟକ ଆସିଥିଲେ । ଭାଗ୍ୟକ୍ରମେ ସେ ସମୟରେ ରାଜକୁମାରମାନଙ୍କ ଶିକ୍ଷାପାଇଁ ସରକାର କୌଣସି ସ୍ୱତନ୍ତ୍ର ବିଦ୍ୟାଳୟର ବ୍ୟବସ୍ଥା କରି ନ ଥିଲେ । କିଏ ଜାଣେ, ଆମ୍ଭମାନଙ୍କ ଶ୍ରୀରାମଚନ୍ଦ୍ର ବର୍ତ୍ତମାନ ପ୍ରତିଷ୍ଠିତ ରାଜକୁମାର କଲେଜ ପରି କୌଣସି ବିଦ୍ୟାଳୟରେ ବିଦ୍ୟାଶିକ୍ଷା କରିଥିଲେ ତାଙ୍କର ଭାବୀ ଜୀବନ କି ଆକାର ଧାରଣ କରିଥାଆନ୍ତା । ଖଡ଼ିପାଠଠାରୁ କଲେଜରେ ବି. ଏ. ପଢ଼ିବା ପର୍ଯ୍ୟନ୍ତ, ସାଧାରଣ ଛାତ୍ରଙ୍କ ସଙ୍ଗେ ଏକ ଆସନରେ ବସି ପଢ଼ିବାର ସୁଯୋଗ ତାଙ୍କୁ ମିଳିଥିଲା । ସିଦ୍ଧାର୍ଥ ସାଧାରଣ ଲୋକଙ୍କ ସଙ୍ଗେ ମିଶି ସେମାନଙ୍କ ଦୁଃଖ ଦୁର୍ଦ୍ଦଶା ଦେଖି ନ ଥିଲେ, ଭାବୀ ଜୀବନରେ ବୁଦ୍ଧ ହୋଇ ପାରିଥାଆନ୍ତେ କି ନାହିଁ, କିଏ କହି ପାରିବ ? ଛାତ୍ରଜୀବନରୁ ଶ୍ରୀରାମଚନ୍ଦ୍ରଙ୍କ ଭାବୀ ଜୀବନରେ ଲୋକସେବା ଧର୍ମର ମୂଳଭିତ୍ତି ପତ୍ତନ ହୋଇଥିଲା ।

ସର୍ବପ୍ରଥମେ ତାଙ୍କୁ ପଣ୍ଡିତ ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ ତତ୍ତ୍ୱାବଧାନରେ ରହି କଟକରେ ବିଦ୍ୟାଶିକ୍ଷା କରିବାକୁ ହୋଇଥିଲା । ତତ୍ପୂର୍ବରେ ବଙ୍ଗର

ତତ୍କାଳୀନ ଲେଫ୍ଟେଣ୍ଟ ସର୍ ଲଭରସ୍ ଟମସନ୍ ମୟୂରଭଞ୍ଜର ନାବାଳକ ରାଜାଙ୍କ ପ୍ରଧାନ ଶିକ୍ଷକରୂପେ ବେଣ୍ଟ୍ରାମ୍ କଡ଼େଲ୍ ନାମକ ଜଣେ ସଚ୍ଚରିତ୍ର ସୁଶିକ୍ଷିତ ଇଂରେଜଙ୍କୁ କଟକ ପଠାଇ ଦେଇଥିଲେ । ପଣ୍ଡିତ ଗୋବିନ୍ଦଚନ୍ଦ୍ରଙ୍କୁ ମଧ୍ୟ ସହକାରୀ ଶିକ୍ଷକରୂପେ ସରକାର ନିଯୁକ୍ତ କରିଥିଲେ ।

କଡେଲ୍ ସାହେବ କଟକସ୍ଥ ମୟୂରଭଞ୍ଜ ଭବନରେ ଛାତ୍ରଙ୍କ ସହ ଏକତ୍ର ବସବାସ କରି ରହିଥିଲେ । କଡେଲଙ୍କ ଚରିତ୍ର ମହାନୁଭବତା ଓ ଶିକ୍ଷା ଦୀକ୍ଷାଦ୍ୱାରା ବାଳକ ଶ୍ରୀରାମଚନ୍ଦ୍ର ପିଲ୍ଦିନୁଁ ଅନୁପ୍ରାଣିତ ହୋଇଥିଲେ । ପ୍ରାୟ ବାରବର୍ଷ କାଳ ଏକାଦିକ୍ରମେ ଶିକ୍ଷକ ଓ ଛାତ୍ର ଏକତ୍ର ଏକ ଭବନରେ ରହିଥିଲେ । ଦୁହିଙ୍କ ମଧ୍ୟରେ ପରି ଜୀବନରେ ଅପୂର୍ବ ସୌହାର୍ଦ୍ଦ୍ୟ ଜନ୍ମିଥିଲା । ଶ୍ରୀରାମଚନ୍ଦ୍ର ଗୁରୁଙ୍କୁ ଅତିଶୟ ସମ୍ମାନ ଓ ଶ୍ରଦ୍ଧା କରୁଥିଲେ । ଅଉ କଡେଲ୍ ସାହେବ ମଧ୍ୟ ତାଙ୍କୁ ନିଜ ପୁତ୍ରଠାରୁ ବଳି ସ୍ନେହ କରୁଥିଲେ । ଏପରି କୌଣସି ଘଟନା ଘଟି ନ ଥିଲା, ଯହିଁରେ ଶିଷ୍ୟ ଗୁରୁଙ୍କୁ ଅମାନ୍ୟ କରିଥିଲେ ।

କଡେଲଙ୍କ ହୃଦୟ ମହତ୍ ଓ ଉଦାର ଥିଲା ଏବଂ ସେ ଉଚ୍ଚ ନୀଚ ସମସ୍ତଙ୍କୁ ସ୍ନେହଚକ୍ଷୁରେ ଦେଖି ପାରୁଥିଲେ । ପ୍ରତିଦିନ ସକାଳେ ଗୁରୁ ଶିଷ୍ୟ ଉଭୟେ ଅଶ୍ୱାରୋହଣ କରି କଟକର ନାନା ସ୍ଥାନରେ ଭ୍ରମଣ କରୁଥିଲେ । ସେହି ସମୟରେ ଯାହା ଆଖି ଆଗରେ ପଡୁଥିଲା, ସେହି ବିଷୟ ନେଇ ଗୁରୁଶିଷ୍ୟ ମଧ୍ୟରେ ଆଲୋଚନା ହେଉଥିଲା । ଶ୍ରୀରାମଚନ୍ଦ୍ର ନିଜର ତୀକ୍ଷ୍ଣ ଦୃଷ୍ଟି ପ୍ରଭାବରେ ପ୍ରାକୃତିକ ଦୃଶ୍ୟାବଳୀର ଗବେଷଣା କରି ଗୁରୁଙ୍କୁ ଚମତ୍କୃତ କରୁଥିଲେ । କଡେଲ ସାହେବ ବାଳକର ଏତାଦୃଶ ଶକ୍ତି ଦେଖି ତାଙ୍କ ବନ୍ଧୁମାନଙ୍କ ନିକଟରେ ଶ୍ରୀରାମଚନ୍ଦ୍ର ଭାବୀ ଜୀବନରେ କିପରି ବଡ଼ଲୋକ ହେବେ, ଏ ବିଷୟର ଆଲୋଚନା କରୁଥିଲେ ।

ଯୌବନରେ ଶ୍ରୀରାମଚନ୍ଦ୍ର ବଡ଼ ଧୀର, ଗମ୍ଭୀର ଓ ଶାନ୍ତଶୀଳ ଥିଲେ । ସ୍କୁଲ କଲେଜର ପାଠ୍ୟ ପୁସ୍ତକ ବ୍ୟତୀତ ସେ ସାହିତ୍ୟ ଓ ଇତିହାସ ପଢ଼ିବାକୁ ଭଲ ପାଉଥିଲେ । ବହୁ ପୁରାତନ କାଳରୁ ପିତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ରାଜ ଦରବାରରେ ଓଡ଼ିଆ ଭାଷାରେ ଲିଖିତ ଯେତେ ପତ୍ର ଥିଲା, ସେ ସମସ୍ତ ଇଂରାଜୀରେ ଅନୁବାଦ କରିଥିଲେ । ଅନେକ ଇଂରେଜି ଗଳ୍ପ ପୁସ୍ତକ ଅବସରକ୍ରମେ ସେ ପଢ଼ୁଥିଲେ । ମିଲ୍ ଓ ସ୍ପେନ୍‌ସର ଲିଖିତ ପାଶ୍ଚାତ୍ୟ ଦର୍ଶନଶାସ୍ତ୍ର କଲେଜରେ ପଢ଼ିବା ବେଳେ ସେ ଆଲୋଚନା କରିଥିଲେ ।

କେବଳ ପଢ଼ାରେ ନୁହେଁ, ଖେଳ ଓ ଶିକାର କରିବାରେ ମଧ୍ୟ ତାଙ୍କର ଦକ୍ଷତା ଥିଲା ଏବଂ ଭିନ୍ନ ଭିନ୍ନ ଖେଳର ସୃଷ୍ଟି କରି ସେ ଆମୋଦ ଲାଭ କରୁଥିଲେ । ପିଲା ଥିବା ବେଳେ ଇଟା ପଥର ଓ ଅନ୍ୟାନ୍ୟ ଜିନିଷ ଯଥାସ୍ଥାନରେ ରଖିଦେଇ ସେମାନଙ୍କୁ ହାକିମ, ଆସାମୀ ଓ ସାକ୍ଷୀ ବୋଲି ଅଭିହିତ କରି ଗୋଟିଏ କଚେରୀର ସୃଷ୍ଟି କରୁଥିଲେ । ସାକ୍ଷୀ ପ୍ରମାଣ ନେଇ ରାୟ ମଧ୍ୟ ଦିଆ ଯାଉଥିଲା । ଦୋଷୀ ଦଣ୍ଡ ପାଉଥିଲା ଓ ନିର୍ଦ୍ଦୋଷୀ ଖଲାସ ହେଉଥିଲା ।

କେବେ ମଧ୍ୟ ସେ ସୈନ୍ୟ ପରିଚାଳନା ଓ ଯୁଦ୍ଧର ଅଭିନୟ କରୁଥିଲେ । ଆଠ ଇଞ୍ଚ ଲମ୍ବ କାଠର ପ୍ରାୟ ଏକ ସହସ୍ର ସିପାହି ତିଆରି କରାଇ ଆଣି ରଖିଥାଆନ୍ତି; ଏହି ସିପାହିମାନଙ୍କ ହସ୍ତରେ ଅସ୍ତ୍ର ଶସ୍ତ୍ର ଓ ମୁଣ୍ଡରେ ପାଗ ପଗଡ଼ି ବନ୍ଧା ଥାଏ । ମନ ହେଲେ, ଏହି ଗୁଣ୍ଡିର ସାହାଯ୍ୟରେ ଯୁଦ୍ଧର ଖେଳ ହୁଏ । ଏ ସବୁ ଖେଳ ବାସ୍ତବିକ ରାଜପୁତ୍ରର ଉପଯୁକ୍ତ ଖେଳ । ସାଧାରଣ କୃଷକ ଓ ମୂଲିଆମାନଙ୍କ ସନ୍ତାନ-ସନ୍ତତିମାନେ ସେମାନଙ୍କ ପିତାମାତାଙ୍କ ଅନୁକରଣରେ ବାଲିଘର କରି

ବାଲ୍ୟରେ ଭିତ ରାହନ୍ତି । ଏହିପରି ବାଲ୍ୟଜୀବନର ବ୍ୟବହାର ଭବୀ ଜୀବନର ଅଭାସ ଦେଇଥାଏ ।

କଟକ କଲେଜିଏଟ୍ ସ୍କୁଲ ଛାତ୍ରମାନେ ଯେପରି ଫୁଟବଲ ଆଦି ଖେଳନ୍ତି, ଶ୍ରୀରାମଚନ୍ଦ୍ର ସେ ସବୁ ଖେଳରେ ଯୋଗ ଦେଉ ନ ଥିଲେ । ସ୍କୁଲ ଛୁଟି ହେଲେ, ସେ ଘୋଡ଼ା ଚଢ଼ି ବୁଲି ଆସନ୍ତି; କେବେ କେବେ ଟେନିସ୍ ଏବଂ ହକି ମଧ୍ୟ ଖେଳନ୍ତି । ଶିକାର କରିବାକୁ ପିଲାଦିନୁଁ ସେ ଭଲ ପାଉଥିଲେ । ସାହସ ତାଙ୍କର ଅସୀମ ଥିଲା; ଭୟକୁ ସେ ଜୀବନରେ ପ୍ରଶ୍ରୟ ଦେଇ ନାହାନ୍ତି ।

ଦେଶ ବିଦେଶ ଭ୍ରମଣର ଆକାଂକ୍ଷା ସେ ଅତି ଶୈଶବରୁ ମନରେ ପୋଷଣ କରିଥିଲେ, ମାତ୍ର ଭ୍ରମଣବେଳେ ରାଜପୁରୋହିତ ବନ୍ଧୁ ଚାକର ବାକର ଓ ଜିନିଷ ପତ୍ରର ଆଡ଼ମ୍ବର ଦେଖି ତାଙ୍କ ମନ ବିଦ୍ରୋହୀ ହୋଇ ଉଠୁଥିଲା । ପିଲାବେଳେ ସେ ଦାର୍ଜିଲିଙ୍ଗ୍ ବୁଲି ଆସିଥିଲେ । ଆଉ ଥରେ ସ୍ୱାସ୍ଥ୍ୟର ଉନ୍ନତି ଉଦ୍ଦେଶ୍ୟରେ ସେ ସିଂହଳ ଯାତ୍ରା କରିଥିଲେ । ସିଂହଳ ଯାତ୍ରା କରିଯିବା ସମୟରେ ଜାହାଜ ବନ୍ଦର ଛାଡ଼ିବାର କିଛି ସମୟ ପୂର୍ବରୁ ତାଙ୍କର ସମସ୍ତ ଚାକରମାନେ ପଳାଇ-ଗଲେ, କେବଳ ଗୋଟିଏ ମାତ୍ର ବ୍ରାହ୍ମଣ ପାଚକ ସଙ୍ଗରେ ଥାଏ । ଶ୍ରୀରାମଚନ୍ଦ୍ର ନିରୁଦ୍ବେଗଚିତ୍ତରେ ଯାତ୍ରା ଆରମ୍ଭ କରିଥିଲେ । କଲମ୍ବୋ ସହରରେ ତାଙ୍କୁ ସ୍ଥାନୀୟ ଚାକର ନିଯୁକ୍ତ କରିବାକୁ ପଡ଼ିଥିଲା । ଚର୍ମ-ରୋଗରେ ପୀଡ଼ିତ ହେବାରୁ ସେ ସିଂହଳ ଦ୍ୱୀପ ଭଲ କରି ଦେଖି ପାରିଲେ ନାହିଁ, ଅତି ଦୁଃଖରେ ସିଂହଳ ଛାଡ଼ି କଲିକତା ଚାଲି ଆସିଲେ ।

କଲିକତାଠାରେ ତାଙ୍କର ଚକ୍ଷୁପୀଡ଼ା ଆରମ୍ଭ ହେଲା । ଡାକ୍ତରଙ୍କ ମତ ଅନୁସାରେ ତାଙ୍କୁ ଗୋଟିଏ ଅନ୍ଧକାରମୟ ଗୃହରେ ରଖା ହେଲା

ଏବଂ କିଛି ପଢ଼ି ପାରିବେ ନାହିଁ ବୋଲି ସାବଧାନ କରିଦେଇଗଲେ । ପଢ଼ିବାର ପ୍ରବଳ ଇଚ୍ଛାକୁ ସେ ଦମନ କରି ପାରିଲେ ନାହିଁ— ଗୋପନରେ ବହି ପଢ଼ିବାକୁ ଲାଗିଲେ, ଚକ୍ଷୁପୀଡ଼ା ବୃଦ୍ଧି ପାଇଲା । ସମସ୍ତ ବିଷୟ ବୁଝି ପାରି ବାଧ୍ୟ ହୋଇ ଡାକ୍ତର ତାଙ୍କ ଆଖିକୁ କିଛି ଦିନ ପାଇଁ ବନ୍ଦ କରିଦେବାରୁ ସେ ଆରୋଗ୍ୟ ଲାଭ କରିଥିଲେ ।

୧୮୮୮ ଖ୍ରୀଷ୍ଟାବ୍ଦରେ ସେ ରେଭେନ୍ସା କଲେଜିଏଟ୍ ସ୍କୁଲରୁ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଏବଂ କଲେଜରେ ପଢ଼ି ଦୁଇ ବର୍ଷ ପରେ ଏଫ୍. ଏ. ପରୀକ୍ଷାରେ ମଧ୍ୟ ଉତ୍ତୀର୍ଣ୍ଣ ହୋଇଥିଲେ । ବି. ଏ. ପରୀକ୍ଷା ଦେବା ନିମନ୍ତେ ତାଙ୍କର ପ୍ରବଳ ଇଚ୍ଛା ଥିଲା । ଇତିମଧ୍ୟରେ ସେ ସାବାଳକତ୍ୱ ଲାଭ କରିବାରୁ ରାଜପରିବାର ତାଙ୍କୁ କଟକରୁ ମୟୂରଭଞ୍ଜ ଆସିବାକୁ ବାଧ୍ୟ କରିଥିଲେ । ବିଦ୍ୟାମନ୍ଦିର ଚିରଦିନ ସକାଶେ ବାଧ୍ୟ ହୋଇ ଛାଡ଼ିବାରୁ ତାଙ୍କ ମନରେ ବଡ଼ କ୍ଷୋଭ ହେଲା, ମାତ୍ର ଗତି ନାହିଁ । ମୟୂରଭଞ୍ଜରେ ତାଙ୍କୁ ରାଜକାର୍ଯ୍ୟ ଶିକ୍ଷା କରିବାକୁ ହେବ । କଡେଲ୍ ସାହେବ ଓ ବାବୁ ମୋହିନୀମୋହନ ଧରଙ୍କୁ ଗୃହ-ଶିକ୍ଷକ ନିଯୁକ୍ତ କରି ସେ ବିଜ୍ଞାନ ଓ ଗଣିତ ଶିକ୍ଷା କଲେ । ରାଜକାର୍ଯ୍ୟ ଓ ରାଜପରିବାରର ବିଷୟ ବୁଝିବାରେ ତାଙ୍କର ସମସ୍ତ ସମୟ ଅତିବାହିତ ହୋଇ ଯାଉଥିଲା, ତଥାପି ସେ ବିଦ୍ୟାଚର୍ଚ୍ଚା ପରିତ୍ୟାଗ କରି ନ ଥିଲେ । ବି. ଏ. ପରୀକ୍ଷା ପାଇଁ କଡେଲ୍ ସାହେବ ଓ କେତେକ ଅନୁଚରଙ୍କ ସହ ସେ କଲିକତା ଯାତ୍ରା କଲେ । ଭଗବାନଙ୍କ ଇଚ୍ଛା ଅନ୍ୟ ପ୍ରକାର । କଲିକତାରେ କଡେଲ୍ ସାହେବଙ୍କ ଦେହ ଅସୁସ୍ଥ ହେଲା ଓ କେତେକ ଜଣ ଅନୁଚର ମଧ୍ୟ ବସନ୍ତିକା ରୋଗରେ ପୀଡ଼ିତ ହେଲେ । ଏପରି ଘଟଣାରେ ପରୀକ୍ଷା ନ ଦେଇ ଫେରି ଆସିବାର କଥା, ମାତ୍ର ଅଟଳପ୍ରତିଜ୍ଞ ଶ୍ରୀରାମଚନ୍ଦ୍ର ପରୀକ୍ଷାକେନ୍ଦ୍ରରେ ଉପସ୍ଥିତ ହୋଇ ବି. ଏ.

ପରୀକ୍ଷାର ଉତ୍ତର ଲେଖିବାକୁ ଲାଗିଲେ । ମାତ୍ର ପରୀକ୍ଷାରେ ସାଫଲ୍ୟ ଲାଭ କରି ପାରି ନ ଥିଲେ ।

୧୮୯୨ ମସିହା ଅଗଷ୍ଟ ୧୪ ତାରିଖ ଦିନ ସେ ରାଜଗାଦିରେ ବସିଲେ । ସେହି ଦିନଠାରୁ ସେ ଦର୍ଶନ ଓ ଆଇନ ଶାସ୍ତ୍ର ଅଧ୍ୟୟନ କରିବାକୁ ଲାଗିଲେ । ଆଇନ ଅଧ୍ୟୟନ କରି, ଭାରତରେ ବ୍ରିଟିଶ୍ ଶାସନ ଯେପରି ଭାବରେ ଚାଳିତ, ସେହି ରୀତିରେ ନିଜ ରାଜ୍ୟ ଚଳାଇବାରେ ମନୋଯୋଗ ଦେଇଥିଲେ ।

ଛାତ୍ରାବସ୍ଥାରେ ଶ୍ରୀରାମଚନ୍ଦ୍ର ବଡ଼ ନମ୍ର ଓ ଧୀରସ୍ଥିର ପ୍ରକୃତିର ଥିଲେ । ରାଜୋଚିତ ଆଡ଼ମ୍ବର ତାଙ୍କୁ ସବୁବେଳେ ଅଡ଼ୁଆ ଲାଗୁଥିଲା । କାହାର ପ୍ରତି ଭୁଲରେ ସେ କଠୋର ବ୍ୟବହାର କରୁ ନ ଥିଲେ । ନିଜେ ରାଜପୁତ୍ର ବୋଲି ଦିନକ ପାଇଁ ସେ ଗର୍ବ ଅନୁଭବ କରି ନାହାନ୍ତି । ସହାଧ୍ୟାୟୀମାନଙ୍କ ସହ ସେ ଅବାଧରେ ମିଶୁଥିଲେ । ସମସ୍ତ ବିଳାସର ଉପକରଣ ହାତ ନିକଟରେ ପାଇ ସୁଦ୍ଧା ସେ ନିଜର ଚରିତ୍ରକୁ ପବିତ୍ର ରଖି ପାରିଥିଲେ । ପାର୍ଶ୍ୱଚରମାନେ ଶତ ଚେଷ୍ଟା କରି ତାଙ୍କୁ ବିପଥଗାମୀ କରାଇ ପାରି ନାହାନ୍ତି ।

ନିଜର ବିବେକ ପ୍ରଭାବରେ ସେ ସମସ୍ତ ବାଧା ବିଘ୍ନ, ସମସ୍ତ ପ୍ରଲୋଭନ ଅତିକ୍ରମ କରି ଭାବୀ ଜୀବନର ସହଜ ପଥ ପରିଷ୍କାର କରି ନେଇଥିଲେ । ଏହା କେବଳ ତାଙ୍କ ପରି ଅବସ୍ଥାପନ୍ନ ଯୁବକ ରାଜପୁତ୍ର ପକ୍ଷରେ ନୁହେଁ, ଯେ କାହାରି ପକ୍ଷରେ ଗୌରବର ବିଷୟ ।



# ତୃତୀୟ ଅଧ୍ୟାୟ



## ଗାର୍ହସ୍ଥ୍ୟ ଜୀବନ

ଶୈଶବରୁ ପିତୃମାତୃହୀନ ହୋଇ ଶ୍ରୀରାମଚନ୍ଦ୍ରଙ୍କ ଜୀବନ ଉନ୍ମୁକ୍ତ ହୋଇ ଯାଇଥିଲା । ସମାଜ ଓ ପରିବାର କଠୋର ଶାସନର ଅନ୍ତର୍ଭୁକ୍ତ ବୋଲି ସେ ନିଜର ମନକୁ ସଙ୍କୁଚିତ କରିବାର ଅବସର ପାଇ ନ ଥିଲେ । ମଙ୍ଗଳମୟଙ୍କ ଆଦେଶ ପିତାମାତାଙ୍କ ମୃତ୍ୟୁରୂପ ଉନ୍ମୁକ୍ତ ଦ୍ୱାର ମଧ୍ୟ ଦେଇ ତାଙ୍କ ଅନ୍ତରରେ ପ୍ରବେଶ କରିଥିଲା । ବିଶ୍ୱପ୍ରେମିକ ମହାନୁଭବ କଡେଲ୍ ସାହେବଙ୍କ ପରି ଗୁରୁ ଓ ବନ୍ଧୁଲାଭ ତାଙ୍କ ଜୀବନଗଠନରେ ଅଳ୍ପ ସାହାଯ୍ୟ କରି ନାହିଁ । ମୟୂରଭଞ୍ଜର ପର୍ବତ, ନଦୀ ଓ ଶ୍ୟାମଳ ବନରାଜି ତାଙ୍କ ମନକୁ ସେହି ଚିର-ଉଦାର ସର୍ବନିୟନ୍ତାଙ୍କ ଆଡ଼କୁ ସ୍ୱତଃ ଆକର୍ଷଣ କରିଥିଲା । ସେହି ସମୟରେ ବଙ୍ଗଦେଶରେ ମହାମନା ରାଜା ରାମମୋହନ ଓ କେଶବଚନ୍ଦ୍ର ସେନଙ୍କ ପ୍ରତିଷ୍ଠିତ ବ୍ରାହ୍ମଧର୍ମର ତେଜ ଖେଳି ବୁଲୁଥିଲା । ଶ୍ରୀରାମଚନ୍ଦ୍ରଙ୍କ ମନ ଯେ ଉଦାରଭାବପୂର୍ଣ୍ଣ ବ୍ରାହ୍ମଧର୍ମ ଆଡ଼କୁ ଆକୃଷ୍ଟ ହୋଇ ନ ଥିବ, କିଏ କହିପାରେ ?

ବ୍ରାହ୍ମଧର୍ମନେତା କେଶବଚନ୍ଦ୍ର ସେନଙ୍କ ଅସାମାନ୍ୟ ରୂପଗୁଣସମ୍ପନ୍ନା ଓ ସୁଶିକ୍ଷିତା ତୃତୀୟା କନ୍ୟାଙ୍କ ସହିତ ଶ୍ରୀରାମଚନ୍ଦ୍ରଙ୍କର ବିବାହପ୍ରସ୍ତାବ କୌଣସି କାରଣରୁ ଉଠିଥିଲା । ଶ୍ରୀରାମଚନ୍ଦ୍ର ଦାର୍ଜିଲିଙ୍ଗ୍-ଅଧିବାସ ସମୟରେ ଉକ୍ତ କନ୍ୟାଙ୍କ ସଙ୍ଗେ ଆଳାପ ପରିଚୟ କରି ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ବିବାହପ୍ରସ୍ତାବ ଆଗତ ହେବାରୁ ତହିଁରେ ସେ ସମ୍ମତି ଦେଇଥିଲେ । କଡେଲ୍ ସାହେବ ମଧ୍ୟ ଏ ପ୍ରସ୍ତାବ ଅନୁମୋଦନ

କରିଥିଲେ । କେତେକ ବର୍ଷ ପର୍ଯ୍ୟନ୍ତ ଏ ପ୍ରସ୍ତାବ ଚାଲିଲା, ମାତ୍ର ମୟୂରଭଞ୍ଜର ରାଜପରିବାର ଓ ପ୍ରଜାମାନେ ଘୋର ଆପତ୍ତି ଉଠାଇଥିଲେ । କେଶବଚନ୍ଦ୍ର ସେନ ବିଧର୍ମୀ, କ୍ଷତ୍ରିୟ ନୁହନ୍ତି; ତାଙ୍କ କନ୍ୟାଙ୍କ ସହିତ ବିବାହ ଅସମ୍ଭବ । ଶ୍ରୀରାମଚନ୍ଦ୍ର ରାଜ୍ୟର ରାଜା; ରାଜ୍ୟକୁ ଛାଡ଼, ପ୍ରଜାମାନଙ୍କୁ ଛାଡ଼, ସେ କେହି ନୁହନ୍ତି । ପ୍ରଜାମାନଙ୍କ ଅସନ୍ତୋଷଭାଜନ ହୋଇ ଆତ୍ମପ୍ରବୃତ୍ତି ଚରିତାର୍ଥ କରିବା ରାଜଧର୍ମ ନୁହେ । ଉଚିତ ହେଉ, ଅନୁଚିତ ହେଉ, ନ୍ୟାୟସଙ୍ଗତ ବା ଅନ୍ୟାୟ ହେଉ, ଲୋକମତ ଉପେକ୍ଷା କରିବା ହିନ୍ଦୁର ରାଜଧର୍ମ ନୁହେ । ହିନ୍ଦୁର ଆଦର୍ଶ ରାଜା ଭଗବାନ୍ ରାମଚନ୍ଦ୍ର ନିଜର ଜୀବନ ଅପେକ୍ଷା ଶ୍ରେଷ୍ଠ, ସାଧ୍ୱୀ, ସହଧର୍ମିଣୀ ସୀତାଦେବୀଙ୍କୁ ପ୍ରଜାଙ୍କ ସନ୍ତୋଷ ନିମିତ୍ତ ବନବାସିନୀ କରାଇଥିଲେ । ଆଧୁନିକ ଯୁଗର ଓଡ଼ିଆର ଆଦର୍ଶ ରାଜା ଶ୍ରୀରାମଚନ୍ଦ୍ର ପ୍ରଜାଙ୍କ ସନ୍ତୋଷ ନିମିତ୍ତ ନିଜ ମନୋନୀତ ପତ୍ନୀଙ୍କୁ ପରିତ୍ୟାଗ କରି ପାରିଥିଲେ । ଏ ତ୍ୟାଗର ମୂଲ୍ୟ ନାହିଁ । ଯୁବକର ପ୍ରେମାଙ୍କୁରର ମୂଳରେ ନିଜ ହସ୍ତରେ କୁଠାରାଘାତ କରିବା କେଡ଼େ କଷ୍ଟକର, ବୋଧ ହୁଏ ଅନୁଭବୀ ଛଡ଼ା ଅନ୍ୟର ବୁଝିବାର ଉପାୟ ନାହିଁ ।

୧୮୯୬ ମସିହାରେ ୨୫ ବର୍ଷ ବୟସରେ ଶ୍ରୀରାମଚନ୍ଦ୍ର ମାନଭୂମ ପଞ୍ଚକୋଟର ମହାରାଜା ନୀଳମଣି ସିଂହଙ୍କ ନାତୁଣୀ ଶ୍ରୀମତୀ ଲକ୍ଷ୍ମୀକୁମାରୀ ଦେବୀଙ୍କୁ ବିବାହ କରିଥିଲେ । ଶ୍ରୀରାମଚନ୍ଦ୍ର ଏପରି ସୁନ୍ଦରୀ ଓ ସୁଗୁଣସମ୍ପନ୍ନା ରମଣୀଙ୍କୁ ପାଇ ଧନ୍ୟ ହୋଇଥିଲେ । ମହାରାଣୀ ଲକ୍ଷ୍ମୀକୁମାରୀ ଆଦର୍ଶ ପତ୍ନୀ ଥିଲେ ଓ ସମସ୍ତେ ତାଙ୍କର କୋମଳ ମଧୁର ବ୍ୟବହାରରେ ମୁଗ୍ଧ ହୋଇଥିଲେ । ଅନୁଚର, ପାର୍ଶ୍ୱଚର ଓ ଭୃତ୍ୟମାନଙ୍କ ପ୍ରତି ମାତୃରୂପ ବ୍ୟବହାର, ଦୀନ ଦୁଃଖୀଙ୍କ ପ୍ରତି ଅନୁକମ୍ପା ପ୍ରକାଶଦ୍ୱାରା ମହାରାଣୀ ସମସ୍ତଙ୍କର ଶ୍ରଦ୍ଧା ଓ ଭକ୍ତିର ପାତ୍ରୀ ହୋଇଥିଲେ ।



ସ୍ୱର୍ଗୀୟ ମହାରଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଦେଓ

ଶ୍ରୀମତୀ ଲକ୍ଷ୍ମୀକୁମାରୀଙ୍କୁ ପତ୍ନୀରୂପେ ଲାଭ କରି ଶ୍ରୀରାମଚନ୍ଦ୍ରଙ୍କ ଗାର୍ହସ୍ଥ୍ୟ ଜୀବନ ମଧୁମୟ ହୋଇଥିଲା । ବିବାହର କେତେକ ବର୍ଷ ପରେ ୧୮୯୭ ମସିହାରେ ତାଙ୍କର ଗୋଟିଏ କନ୍ୟାରତ୍ନ ଲାଭ ହୋଇଥିଲା । ଦୁଇବର୍ଷ ପରେ ଅର୍ଥାତ୍ ୧୮୯୯ ମସିହା ଅଗଷ୍ଟ ମାସ ୭ ତାରିଖ ଦିନ ଶ୍ରୀରାମଚନ୍ଦ୍ରଙ୍କ ଭାବୀ ବଂଶଧର ଟୀକାଏତ ପୂର୍ଣ୍ଣଚନ୍ଦ୍ର ଜନ୍ମଗ୍ରହଣ କଲେ । ମୟୂରଭଞ୍ଜରେ ଆନନ୍ଦର ସ୍ରୋତ ଉଠିଲା । ଦୀନ ଦୁଃଖୀ ଅନ୍ନବସ୍ତ୍ର ପାଇଲେ, ବାଳକ ବାଳିକାମାନେ ମିଷ୍ଟାନ୍ନ ପାଇ ହସହସ ମୁହଁରେ ଘରକୁ ଫେରିଲେ । ରାଜ୍ୟର ଗୃହଅଙ୍ଗ ଆଲୋକମାଳାରେ ବିଭୂଷିତ ହୋଇ ଅପୂର୍ବଶ୍ରୀ ଧାରଣ କଲା । ୧୯୦୧ ମସିହା ଫେବୃଆରୀ ୧୮ ତାରିଖରେ ଦ୍ୱିତୀୟ ପୁତ୍ର ଶ୍ରେଷ୍ଠବୀର ପ୍ରତାପଚନ୍ଦ୍ର (ବର୍ତ୍ତମାନ ମହାରାଜା) ଜନ୍ମଗ୍ରହଣ କରିଥିଲେ ।

ଗାର୍ହସ୍ଥ୍ୟ ଜୀବନର ଏତେ ଆନନ୍ଦ, ଏତେ ମଧୁମୟ ସମ୍ପର୍କ ବୋଧ ହୁଏ ବିଧାତାଙ୍କର ଅସହ୍ୟ ହେଲା । ପୁଣି ମୟୂରଭଞ୍ଜରେ ବସନ୍ତ ରୋଗ ପ୍ରବଳ ହେଲା । ମହାରାଜା କୃଷ୍ଣଚନ୍ଦ୍ର ଓ ତାଙ୍କ ପତ୍ନୀ ଏହି ରୋଗରେ ଅତି ଅଳ୍ପ ବୟସରେ ସଂସାରଲୀଳା ଶେଷ କରି ଅମରଧାମର ଯାତ୍ରୀ ହୋଇ-ଥିଲେ । ମହାରାଣୀ ଲକ୍ଷ୍ମୀକୁମାରୀ ସେହି ରୋଗରେ ଆକ୍ରାନ୍ତ ହୋଇ ୧୯୦୨ ମସିହା ମାର୍ଚ୍ଚ ୭ ତାରିଖରେ ଶ୍ରୀରାମଚନ୍ଦ୍ରଙ୍କୁ ଛାଡ଼ି ଚାଲିଗଲେ । ପତ୍ନୀଙ୍କ ମୃତ୍ୟୁରେ ତାଙ୍କ ହୃଦୟ ଭାଙ୍ଗି ପଡ଼ିଲା । ସେ ମାଛ ମାଂସ ଆଦି ଭଲ ଖାଇବା ପିଇବା ପରିତ୍ୟାଗ କଲେ ଏବଂ ଅତି ପ୍ରିୟ ଶିକାର ପରିତ୍ୟାଗ କରି ସନ୍ନ୍ୟାସବ୍ରତ ଅବଲମ୍ବନ କଲେ ।

ପତ୍ନୀବିୟୋଗରୂପ ଭୟାବହ ବିପଦ୍ ସମୟରେ ହୃଦୟର ପ୍ରଗାଢ଼ ଈଶ୍ୱରବିଶ୍ୱାସ ତାଙ୍କୁ କିପରି ଆଶ୍ୱାସ ପ୍ରଦାନ କରିଥିଲା ଏବଂ ଭଗବାନଙ୍କ ଉପରେ ସେ ସମସ୍ତ ଭାର କିପରି ଅର୍ପଣ କରି ପାରିଥିଲେ, ତାହା ସେହି

ସମୟରେ ଶ୍ରୀଯୁକ୍ତ ବାବୁ ଶଶିଭୂଷଣ ରାୟଙ୍କ ନିକଟକୁ ଲିଖିତ ତାଙ୍କ ପତ୍ରରୁ ବେଶ୍ ଜଣା ପଡ଼େ । ସେ ଲେଖିଥିଲେ—

27-3-1902

My dear Sasi Babu,

Allow me to thank you for your kind letter of sympathy. The Merciful Father who has sent this visitation will also give consolation and strength to bear up the loss.

yours sincerely
Sd. S. C. Bhanj Deo

(ଅନୁବାଦ)

ପ୍ରିୟ ଶଶୀ ବାବୁ, ୨୭-୩-୧୯୦୨

ଆପଣଙ୍କ ସହାନୁଭୂତିସୂଚକ ପତ୍ର ପାଇ ଧନ୍ୟବାଦ ଦେଉଅଛି । ଦୟାମୟ ପରମପିତା ପରମେଶ୍ୱର ଦୁର୍ଘଟନା ଘଟାଇ ଅଛନ୍ତି । ଏ ବିୟୋଗ-ଦୁଃଖ ବହନ କରିବାପାଇଁ ସେ ମୋତେ ଆଶ୍ୱାସନା ଓ ବଳ ପ୍ରଦାନ କରିବେ ।

ଆପଣଙ୍କର
(ସ୍ୱାକ୍ଷର) ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ

ଏହି ବିଷାଦମୟ ଘଟନାକୁ ଚିରସ୍ମରଣୀୟ କରିବା ଉଦ୍ଦେଶ୍ୟରେ ଶ୍ରୀରାମଚନ୍ଦ୍ର ୧୯୦୬ ମସିହାରେ "ଲକ୍ଷ୍ମୀକୁମାରୀ ଧର୍ମଶାଳା" ନାମକ ଏକ ପ୍ରକାଣ୍ଡ ସୌଧ ନିର୍ମାଣ କରାଇଲେ । ବାରିପଦାକୁ ଯେ କେହି ବ୍ୟକ୍ତି ଗଲେ, ଏଠାରେ ସ୍ଥାନ ପାଇ ପାରନ୍ତି । "ରାଣୀବାଗ" ନାମକ ଗୋଟିଏ ସୁନ୍ଦର ବଗିଚା ମଧ୍ୟରେ ଶଙ୍ଖ-ମଲମଲ ପ୍ରସ୍ତରଫଳକରେ ମହାରାଣୀ ଲକ୍ଷ୍ମୀକୁମାରୀଙ୍କ ନାମ ଖୋଦିତ ହୋଇ ରଖାଗଲା ।



ଶ୍ରୀମନ୍ ମହାରାଜା ସର୍ ପ୍ରତାପଚନ୍ଦ୍ର ଭଞ୍ଜ ଦେଓ, କେ. ସି. ଆଇ. ଇ.

ମହାରାଣୀ ଲକ୍ଷ୍ମୀକୁମାରୀଙ୍କ ମୃତ୍ୟୁର ତନି ବର୍ଷ ପର୍ଯ୍ୟନ୍ତ ଶ୍ରୀରାମଚନ୍ଦ୍ର ପୁନର୍ବିବାହର ନାମ ପର୍ଯ୍ୟନ୍ତ ଧରି ନ ଥିଲେ । ଭଗବାନଙ୍କ ଉଦ୍ଦେଶ୍ୟରେ ଆତ୍ମସମର୍ପଣ କରି ସନ୍ନ୍ୟାସବ୍ରତ ଅବଲମ୍ବନପୂର୍ବକ ସେ ସବୁବେଳେ ପ୍ରାର୍ଥନା କରୁଥିଲେ—"ହେ ସର୍ବମୟ ପରମେଶ୍ୱର ! କେଉଁ ଦୋଷରୁ ମୋର ଏହି ଅଭାବନୀୟ ଦୁର୍ଘଟଣା ଘଟିଲା—କେଉଁ ମହାପାପରୁ ମୋର ପାର୍ଥିବ ଜୀବନର ସମସ୍ତ ସୁଖ-ସ୍ୱପ୍ନ ଏକ ମୁହୂର୍ତ୍ତକେ ଉଭେଇଗଲା ? ଥାନ ମୁଁ କିଛି ବୁଝି ପାରୁ ନାହିଁ ।" ସମୟ ସମୟରେ ତାଙ୍କର ମନେ ହୁଏ, ବୋଧ ହୁଏ କେଶବଚନ୍ଦ୍ରଙ୍କ କରପଲ୍ଲବଧା କନ୍ୟାଙ୍କୁ ପ୍ରତ୍ୟାଖାନ କରିଥିବାରୁ ଭଗବାନ୍ ଏପରି ଦଣ୍ଡବିଧାନ କରିଅଛନ୍ତି । ଏତେ ଦିନ ଅତୀତ ହୋଇ ଯାଇଅଛି, ତଥାପି ଏହି ଅସାମାନ୍ୟା ମହିଳା ତାଙ୍କର ଅଭିଳଷିତ ପତିଙ୍କଠାରେ ଆତ୍ମସମର୍ପଣ କରି ଅଛନ୍ତି । ଏ ବିଷୟ ଆଲୋଚନା କରି ଶ୍ରୀରାମଚନ୍ଦ୍ର ବଡ଼ କାତର ହୋଇ ପଡ଼ିଲେ । ସୀତାଦେବୀଙ୍କ ପରି ଏହି ମହିଳା ୧୪ ବର୍ଷକାଳ ତାଙ୍କ ହୃଦୟଦେବତା ଶ୍ରୀରାମଚନ୍ଦ୍ରଙ୍କୁ ଅନୁଧ୍ୟାନ କରି ରହିଥିଲେ ।

ଏସବୁ ବିଷୟ ଚିନ୍ତା କରି ମହାରାଜା ଶ୍ରୀରାମଚନ୍ଦ୍ର ତାଙ୍କୁ ବିବାହ କରିବା ନିମିତ୍ତ ମନ ବଳାଇଲେ । ପୁଣି ସେହି ବାଧା ବିଘ୍ନ ଆସି ଆଗରେ ଦଣ୍ଡାୟମାନ ହେଲା । ଏକ ପକ୍ଷରେ ପ୍ରଜାମାନଙ୍କ ଆପତ୍ତି—ଜାତି,ଧର୍ମ ଓ ସାମାଜିକ ନୀତି ଅନୁଯାୟୀ ଏ ବିବାହ ଅସମ୍ଭବ । ଅନ୍ୟ ପକ୍ଷରେ ବ୍ରାହ୍ମ-ନେତାମାନଙ୍କ ଆପତ୍ତି—ମହାରାଜା ଶ୍ରୀରାମଚନ୍ଦ୍ର ନିଜେ ବ୍ରାହ୍ମଧର୍ମରେ ଦୀକ୍ଷିତ ନ ହେବାଯାଏ ବିବାହ ହୋଇ ନ ପାରେ; ସର୍ବୋପରି ପ୍ରଚଳିତ ଆଇନଗତ ଆପତ୍ତି—ଏ ବିବାହ ଆଇନ ଅନୁସାରେ ଉପଯୁକ୍ତ ବିବେଚିତ ହେବ କି ନା ? ଏ ସମସ୍ତ ବାଧାବିଘ୍ନ ସତ୍ତ୍ୱେ ମହାରାଜା ଶ୍ରୀରାମଚନ୍ଦ୍ର ବୀର-ପୁରୁଷ ପରି ଅଟଳ ଅଟଳ ହୋଇ ରହିଲେ । ସେ ସମୟରେ ସେ ନିଜେ ତାଙ୍କ ଦେବାନଙ୍କ ନିକଟକୁ ଯେଉଁ ପତ୍ର ପଠାଇଥିଲେ, ପାଠକମାନଙ୍କ ଅବଗତି ନିମିତ୍ତ ତହିଁର ସାରାଂଶ ନିମ୍ନରେ ଦିଆଗଲା :—

"ଧନ୍ୟ ଭାଗ୍ୟବିଧାତା ପରମେଶ୍ୱର, ମୋର ହୃଦୟରେ ଶକ୍ତି ଦେଇ ମୋତେ ବଳୀୟାନ୍ କରି ଦେଇଅଛ। ଏକ ପକ୍ଷରେ ନ୍ୟାୟ, କର୍ତ୍ତବ୍ୟ-ବୋଧ ଓ ବିବେକର ବାଣୀ; ଅନ୍ୟ ପକ୍ଷରେ ଲୋକମତ। ଏ କ୍ଷେତ୍ରରେ ମୋତେ ନିଜର କର୍ତ୍ତବ୍ୟ ସ୍ଥିର କରିବାକୁ ହେବ। ଜନମତ ଉପେକ୍ଷା କରିବା ଉଚିତ ନୁହେ ସତ୍ୟ, ମାତ୍ର ନୈତିକ ପ୍ରେରଣାକୁ ଜଳାଞ୍ଜଳି ଦେଇ କେବଳ ଲୋକମତ ରକ୍ଷା କରିବା କଦାପି ଧର୍ମାନୁମୋଦିତ ହୋଇ ନ ପାରେ। ତେବେ ମୋର ପ୍ରଜାବର୍ଗଙ୍କୁ ନ ଜଣାଇଁ ମୁଁ କିଛି କରିବାକୁ ଇଚ୍ଛା କରେ ନାହିଁ। ଯଦି ପାରେଁ, ସେମାନଙ୍କୁ ମୋ ସଙ୍ଗରେ ଏକମତ କରିବାକୁ ଚେଷ୍ଟା କରିବି। ସେମାନେ ମୋ ମତ ଅନୁମୋଦନ ନ କରି ପାରନ୍ତି, ତଥାପି ମୋର ଅବସ୍ଥା ବିବେଚନା କରି ଅନ୍ତତଃ ମୋ ପ୍ରତି ଅନୁକମ୍ପା ପ୍ରକାଶ କରିବେ। ସେମାନଙ୍କ ଅବସ୍ଥାରେ ପଡ଼ିଥିଲେ, ମୁଁ ଠିକ୍ ଆଜି ସେମାନଙ୍କ ପରି କରିଥାନ୍ତି; ହୁଏ ତ ସେମାନଙ୍କ ଅପେକ୍ଷା ଅଧିକ କଠୋର ହୋଇଥାନ୍ତି।"

ଉଦ୍ଧୃତ ଅଂଶରୁ ପାଠକ ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ଉଦାର ହୃଦୟର ଯଥେଷ୍ଟ ପରିଚୟ ପାଇ ପାରିବେ। ବିବେକର ବାଣୀକୁ ସର୍ବୋପରି ସ୍ଥାନ ଦେବା, ପ୍ରଜାବର୍ଗଙ୍କ ଅଭିମତ ପ୍ରତି ଅନାସ୍ଥା ପ୍ରଦର୍ଶନ ନ କରି ସେମାନଙ୍କୁ ନିଜ ମତକୁ ଆଣିବାର ପ୍ରୟାସ କରିବା, ଯେ କୌଣସି ଲୋକର କାର୍ଯ୍ୟ ନୁହେ। ଏତେ ବଡ଼ ରାଜ୍ୟର ହର୍ତ୍ତା କର୍ତ୍ତା ହୋଇ ନୀତି ଓ ଧର୍ମର ଅନୁମୋଦିତ ମାର୍ଗରେ ଜୀବନର ପ୍ରତ୍ୟେକ କାର୍ଯ୍ୟକୁ ଚାଳିତ କରିବା ଅନନ୍ୟସାଧାରଣ। ଏ ମହା ପରୀକ୍ଷାରେ ସେ ଯେପରି ଭାବରେ ଉତ୍ତୀର୍ଣ୍ଣ ହୋଇଗଲେ, ଭାବିଲେ ସ୍ତମ୍ଭୀଭୂତ ହେବାକୁ ହୁଏ। ଈଶ୍ୱରବିଶ୍ୱାସ ହୃଦୟରେ ଦୃଢ଼ ନ ହେଲେ, ମନୁଷ୍ୟ କେବଳ ସାଧାରଣ ନୀତି ଓ ଧର୍ମ-ବଳରେ ଏତେ ବାଧା ବିଘ୍ନ ଅତିକ୍ରମ କରିବାକୁ ସମର୍ଥ ହେବା ନିତାନ୍ତ

ଅସମ୍ଭବ । କେବଳ କର୍ତ୍ତବ୍ୟ ଓ ନ୍ୟାୟବୋଧରେ ସେ କଲିକତାଠାରେ ଦ୍ୱିତୀୟଥର ଦାରପରିଗ୍ରହ କରିଥିଲେ ।

ଶ୍ରୀପଦ୍ମମଞ୍ଜରୀ ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ଜ୍ୟେଷ୍ଠା କନ୍ୟା । ରୂପରେ, ଗୁଣରେ ସେ ବାଳିକା ଅସାମାନ୍ୟା । ମହାରାଜା ଗୁରୁତର ରାଜକାର୍ଯ୍ୟରୁ ଅବସର ନେବାବେଳେ ଶ୍ରୀପଦ୍ମମଞ୍ଜରୀଙ୍କୁ ଦେଖି, ତାଙ୍କ ଅନୁପମ ରୂପମାଧୁରୀ ଓ ବାକ୍‌ଚାତୁରୀ ଦେଖି ଶୁଣି ମୁଗ୍ଧ ହୋଇ ଯାଆନ୍ତି; ତାଙ୍କର ସବୁ ଫରମାସ୍ ଅତି ଆନନ୍ଦରେ ପୂରଣ କରନ୍ତି । ବୟସ ୭।୮ ବର୍ଷ ହୋଇଥିଲେ ମଧ୍ୟ ଏ ବାଳିକା ଭଲରୂପେ ଇଂରାଜୀ କହି ପାରୁଥିଲେ ଓ ଅତି ସୁମଧୁର ସଙ୍ଗୀତ ଗାନ କରି ସମସ୍ତଙ୍କୁ ମୁଗ୍ଧ କରୁଥିଲେ । ଲେଫ୍‌ଟେନାଣ୍ଟ୍ ସର୍ ଆଣ୍ଡ୍ରୁ ଫ୍ରେଜର ବାରିପଦା ଉଚ୍ଚ ଇଂରାଜୀ ବିଦ୍ୟାଳୟର ପୁରସ୍କାର ବିତରଣୀ ସଭାର ସଭାପତି ଆସନ ଗ୍ରହଣ କରିବା ଦିନ ବାଳିକା ଗୋଟିଏ ଇଂରାଜୀ ପଦ୍ୟ ଆବୃତ୍ତି କରିଥିଲେ । ତାଙ୍କର ଉଚ୍ଚାରଣ ଓ ମଧୁର ସ୍ୱରଲହରୀ ଶୁଣି ଲାଟ୍ ସାହେବ ଓ ଦର୍ଶକମଣ୍ଡଳୀ ବିସ୍ମିତ ହୋଇଗଲେ ଏବଂ ଶତମୁଖରେ ବାଳିକାର ପ୍ରଶଂସା କରିବାକୁ ଲାଗିଲେ ।

ଇଂରାଜୀରେ ଗୋଟିଏ ପ୍ରବାଦ ଅଛି—ଦେବତାମାନେ ଯାହାକୁ ଭଲ ପାଆନ୍ତି, ସେ ଅଳ୍ପ ବୟସରେ ଇହଧାମ ଛାଡ଼ି ଚାଲିଯାଏ । ଶ୍ରୀପଦ୍ମମଞ୍ଜରୀ ଯେ କୌଣସି ଅଭିଶାପଗ୍ରସ୍ତା ଦେବୀ, ତାଙ୍କୁ ଦେଖିଲେ ଏହା କେହି ସନ୍ଦେହ କରିବାର କୌଣସି କାରଣ ନ ଥିଲା । ଦେବତା-ମାନଙ୍କର ଡାକ ଆସିଲା, ଶ୍ରୀପଦ୍ମମଞ୍ଜରୀଙ୍କୁ ଯିବାକୁ ହେବ । ୧୯୦୬ ମସିହାରେ ସେ ଜ୍ୱରରୋଗରେ ପୀଡ଼ିତା ହେଲେ । କଲିକତାରୁ ବଡ଼ ବଡ଼ ଡାକ୍ତର ଆସି ଚିକିତ୍ସା ଆରମ୍ଭ କଲେ । ମନୁଷ୍ୟର ସୀମାବଦ୍ଧ ଚେଷ୍ଟାଦ୍ୱାରା ଯାହା ସମ୍ଭବ, ସେଥିରେ ତ୍ରୁଟି ହୋଇ ନାହିଁ; ମାତ୍ର ସବୁ ବିଫଳ ହେଲା ।

ଶ୍ରୀପଦ୍ମମଞ୍ଜରୀ ୧୯୦୬ ମସିହା ଅପ୍ରେଲ ୯ ତାରିଖ ଦିନ ଅମର-ଧାମକୁ ଚାଲିଗଲେ । ଶ୍ରୀରାମଚନ୍ଦ୍ର ତାଙ୍କ ପ୍ରିୟ କନ୍ୟାକୁ ଶେଷ ଚୁମ୍ବନଟିଏ ଦେଇ କ୍ଷଣକାଳପାଇଁ ମୂର୍ଚ୍ଛିତ ହୋଇ ପଡ଼ିଲେ । ଚକ୍ଷୁ ଲୋତକପୂର୍ଣ୍ଣ ହୋଇଗଲା; କର୍ତ୍ତବ୍ୟବୋଧରେ ବାଷ୍ପରୁଦ୍ଧକଣ୍ଠ ଶ୍ରୀରାମଚନ୍ଦ୍ର ହଠାତ୍ ଉଠି ପଡ଼ିଲେ; କଚେରୀକୁ ଯାଇ ଡାକ୍ତରମାନଙ୍କ ଫିସ୍ ବାବତ ଚେକ ଦସ୍ତଖତ କରି ପକାଇଲେ; ତା ପରେ ଦ୍ୱାର ରୁଦ୍ଧ କରି ନିର୍ଜନରେ ରୋଦନ କରିବାକୁ ଲାଗିଲେ ଓ ଭଗବାନଙ୍କ ପାଦପଦ୍ମରେ ଆତ୍ମସମର୍ପଣ କରି ସମସ୍ତ ଦୁଃଖ, ସମସ୍ତ ତାପ ସହ୍ୟ କଲେ ।

କଲିକତାର କୌଣସି ସଭାରେ ୧୯୦୬ ମସିହା ଡିସେମ୍ବର ମାସରେ ବକ୍ତୃତା ଦେବାବେଳେ ଏହି ଘଟଣାକୁ ଲକ୍ଷ୍ୟ କରି ସେ କହିଥିଲେ, "ଦୁଃଖ ଶୋକ ସମୟରେ ଯେତେବେଳେ ପୃଥିବୀ ଓ ଆକାଶ ଶୂନ୍ୟ ଦେଖାଯାଏ, ତେତେବେଳେ କେବଳ ଭଗବାନଙ୍କ ପାଦପଦ୍ମ ବ୍ୟତୀତ ଅନ୍ୟ କେଉଁଥିରେ ମନ ଶାନ୍ତି ପାଏ ନାହିଁ । ସେହି ଭୟାବହ, ଅଥଚ ପବିତ୍ର ମୁହୂର୍ତ୍ତରେ ପରିଷ୍କାର ଶୁଣିବାକୁ ମିଳେ —ସେହି ଅମୃତ ସାନ୍ତ୍ୱନା ଓ ଆଶାର ବାଣୀ । ତତ୍ପରେ ମନରେ ପୃଥିବୀର ଯାବତ୍ ଦୁଃଖ କଷ୍ଟ ଅମ୍ଲାନବଦନରେ ସହ୍ୟ କରିବାର ଶକ୍ତି ଆପେ ଆସି ହୃଦୟରେ ବିରାଜମାନ ହୁଏ ।"

ଧନ୍ୟ ମହାରାଜ, ଧନ୍ୟ ତୁମ୍ଭର ଈଶ୍ୱରବିଶ୍ୱାସ ! ଉତ୍କଳ ଧନ୍ୟ-ଭୂମି ଏପରି ସନ୍ତାନ ପାଇ । ଶ୍ରୀରାମଚନ୍ଦ୍ରଙ୍କ ଜୀବନର ଯଦି କିଛି ଉଦ୍ଦେଶ୍ୟ ଥାଏ, ତାହା ତାଙ୍କ ଈଶ୍ୱରବିଶ୍ୱାସ, କାର୍ଯ୍ୟକୁଶଳତା ଓ ବିପଦ୍ ସମୟର ଧୈର୍ଯ୍ୟ । ଯେତେ ଉତ୍କଳର ନରନାରୀ ଏହି ରାଜର୍ଷିଙ୍କ ପବିତ୍ର, ମଧୁମୟ ଚରିତ୍ରରେ ଉଦ୍‌ବୁଦ୍ଧ ହେବେ, ଉତ୍କଳର ଦଶା ଅଚିରେ ଫେରି ଯିବ ? ଶ୍ରୀରାମଚନ୍ଦ୍ରଙ୍କ ଜନ୍ମ ଉତ୍କଳରେ ବୃଥା ହେବାର ନୁହେଁ; ଏହେ,

ମହାପୁରୁଷ ଯେଉଁଠାରେ ଜନ୍ମଗ୍ରହଣ କରିଛନ୍ତି, ସେ ଦେଶର ଭବିଷ୍ୟତ୍ ନିଶ୍ଚୟ ଉଜ୍ଜ୍ୱଳ ।

ଶ୍ରୀପଦ୍ମଶ୍ରୀଙ୍କ ପବିତ୍ର ନାମ ଚିରସ୍ମରଣୀୟ କରିବା ପାଇଁ ମହାରାଜା ଶ୍ରୀରାମଚନ୍ଦ୍ର ବାରିପଦାର ଦୁଇମାଇଲ ଦୂରବର୍ତ୍ତୀ ସ୍ଥାନରେ ଗୋଟିଏ କୁଷ୍ଠାଶ୍ରମର ପ୍ରତିଷ୍ଠା କଲେ; ସେଠାରେ ମର୍ମର ପ୍ରସ୍ତର ଫଳକରେ ଶ୍ରୀପଦ୍ମଶ୍ରୀଙ୍କ ନାମ ଲିଖିତ ରହିଲା ।



# ଚତୁର୍ଥ ଅଧ୍ୟାୟ



## ସ୍ୱଦେଶ ଭ୍ରମଣ

ଶ୍ରୀରାମଚନ୍ଦ୍ର ୧୮୯୨ ମସିହାରେ ରାଜ୍ୟଭାର ଗ୍ରହଣ କରି ରାଜ୍ୟଶାସନ କରିବାକୁ ଲାଗିଲେ; ପ୍ରାଣ ପଣ କରି ରାଜ୍ୟର ସମୂହ ଉନ୍ନତି କରିବା ନିମିତ୍ତ ଚେଷ୍ଟା କଲେ । ପିତା ରାଜ୍ୟର ଉନ୍ନତିକଳ୍ପେ ଯେଉଁ ସବୁ କାର୍ଯ୍ୟ କରି ଯାଇଥିଲେ, ଶ୍ରୀରାମଚନ୍ଦ୍ର ସେହି ସବୁ ପୁଙ୍ଖାନୁପୁଙ୍ଖ ପର୍ଯ୍ୟାଲୋଚନା କରି ସବୁ ବିଭାଗ ପରିବର୍ତ୍ତନ ଓ ପରିବର୍ଦ୍ଧନ କଲେ । ରାଜ୍ୟର ଉନ୍ନତି ଦୃଷ୍ଟିରେ ୧୯୦୩ ମସିହାରେ ବ୍ରିଟିଶ ସରକାର ତାଙ୍କୁ 'ମହାରାଜା' ଉପାଧିରେ ଭୂଷିତ କରିଥିଲେ । ଭାରତସମ୍ରାଟ୍ ସପ୍ତମ ଏଡ୍‌ୱାର୍ଡ଼ଙ୍କ ଅଭିଷେକ ଅନୁଷ୍ଠାନରେ କଲିକତାଠାରେ ଲେଫ୍‌ଟେନାଣ୍ଟ ବୋର୍ଦ୍ଦିଲନ୍ ସାହେବ ମହାରାଜା ଉପାଧିର ସନନ୍ଦ ଓ ଖିଲାତ୍ ଦେବାବେଳେ ତାଙ୍କର ବହୁ ପ୍ରଶଂସା ଗାନ କରିଥିଲେ ।

୧୯୦୪ ମସିହା ଡିସେମ୍ବର ୨ ତାରିଖରେ ବଙ୍ଗର ଲେଫ୍‌ଟେନାଣ୍ଟ୍ ସାର ଆଣ୍ଡ୍ରୁ ଫ୍ରେଜର୍ ବାରିପଦା ଆଗମନ କରିଥିଲେ । ଓଡ଼ିଶାର ତତ୍‌କାଳୀନ କମିଶନର ସାହେବ ଏବଂ ବେଙ୍ଗଲ ନାଗପୁର ରେଲ୍ କମ୍ପାନୀର ଅଧ୍ୟକ୍ଷ ଓ ପ୍ରଧାନ ଇଞ୍ଜିନିୟର ସାହେବମାନେ ମଧ୍ୟ ଲାଟ୍ ସାହେବଙ୍କ ସଙ୍ଗେ ଆସିଥିଲେ । ସେହି ସମୟରେ ରୂପସା ଷ୍ଟେସନଠାରୁ ବାରିପଦା ପର୍ଯ୍ୟନ୍ତ ଯେଉଁ ରେଲ୍ ଲାଇନ୍ ହୋଇଅଛି, ସେହି ଲାଇନର ଉଦ୍ଘାଟନକ୍ରିୟା ସମ୍ପନ୍ନ ହୋଇଥିଲା । ଏପର୍ଯ୍ୟନ୍ତ କୌଣସି ଲାଟ ସାହେବ କେବେ ମୟୂରଭଞ୍ଜକୁ ଆସି ନ ଥିଲେ । ପ୍ରଦେଶର ଶାସନକର୍ତ୍ତାଙ୍କର ଅଭିନନ୍ଦନ ସକାଶେ ଯାହା ଦରକାର, ମୟୂରଭଞ୍ଜ ତହିଁରେ ତ୍ରୁଟି କରି ନ ଥିଲା । ରାସ୍ତା ଘାଟ ସୁନ୍ଦର ଫଳ ପୁଷ୍ପ ଓ ଲତାଗୁଳ୍ମରେ ସୁସଜ୍ଜିତ ହେଲା, ସ୍ଥାନେ ସ୍ଥାନେ ମନୋହର ତୋରଣ ନିର୍ମାଣ କରାଗଲା । ରଜନୀ ଦୀପ୍ତିର ଆଲୋକମାଳାରେ ବାରିପଦା ସହର ପଶ୍ଚିମରାଜ୍ୟକୁ ନିନ୍ଦା କରୁଥିଲା ।

ବାରିପଦାଠାରେ ଲାଟ ସାହେବ ପହଞ୍ଚିବା ପରେ ମୟୂରଭଞ୍ଜ ରେଲ୍ ଲାଇନ୍ ଉଦ୍ଘାଟନକ୍ରିୟା ସମ୍ପନ୍ନ ହେଲା । ରାଜ୍ୟର ବାଣିଜ୍ୟ ବ୍ୟବସାୟର ବୃଦ୍ଧି ଓ ଯାତାୟାତର ସୁବିଧା ନିମନ୍ତେ ଛଅ ଲକ୍ଷ ଟଙ୍କା ଖର୍ଚ୍ଚରେ ଏହି ରେଲ୍ ଲାଇନ୍ ନିର୍ମିତ ହୋଇଥିଲା । ମହାରାଜାଙ୍କ ସମ୍ବନ୍ଧରେ ଲାଟ ସାହେବ ଏ ଘଟନାରେ ଯେଉଁ ଅଭିମତ ପ୍ରକାଶ କରି ତାଙ୍କର ସଦ୍‌ଗୁଣାବଳୀର ପ୍ରଶଂସା କରିଥିଲେ, ତାହାର ସାରାଂଶ ନିମ୍ନରେ ଦିଆଗଲା :—

"ମହାରାଜା ଶ୍ରୀରାମଚନ୍ଦ୍ରଙ୍କୁ ଶାସକରୂପେ ପାଇ ମୟୂରଭଞ୍ଜ ଆଜି ଧନ୍ୟ ହୋଇଅଛି । ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ଓ ବିଳାସରେ ସମୟ ଅପବ୍ୟୟ ନ କରି ରାଜ୍ୟର ସମୃଦ୍ଧି ବୃଦ୍ଧି କରିବା ନିମିତ୍ତ ସେ ସ୍ଥିର-ପ୍ରତିଜ୍ଞ । ମୋର ବିଶ୍ୱାସ, ଏହି ସୁଶିକ୍ଷିତ ସୁସଭ୍ୟ ଶାସକଙ୍କ ଅଧୀନରେ

ମୟୂରଭଞ୍ଜ ଉତ୍ତରୋତ୍ତର ଉନ୍ନତ କରିବ । ମୋର ଅନ୍ତରିକ ଇଚ୍ଛା, ଭଗବାନ୍ ତାଙ୍କୁ ଦୀର୍ଘଜୀବୀ କରନ୍ତୁ ଏବଂ ତାଙ୍କର ସମସ୍ତ ଶୁଭ ପ୍ରଚେଷ୍ଟା ଫଳବତୀ ହେଉ ।”

ଦେବାନୀ ଓ ଫୌଜଦାରୀ ମୋକଦ୍ଦମା ବିଚାର ସମ୍ବନ୍ଧରେ ରାଜାମାନଙ୍କର କୌଣସି ବିଶେଷ କ୍ଷମତା ନ ଥିଲା । ୧୮୯୪ ମସିହାରେ ସରକାର ଗଡ଼ଜାତର ରାଜାମାନଙ୍କୁ ଯେଉଁ ସନନ୍ଦ ପ୍ରଦାନ କରିଥିଲେ, ତହିଁରେ ସେମାନଙ୍କର କ୍ଷମତା ବଡ଼ ସୀମାବଦ୍ଧ ଥିଲା । ମହାରାଜା ଶ୍ରୀରାମଚନ୍ଦ୍ର ତାଙ୍କର ଜ୍ଞାନ ଓ ବୁଦ୍ଧିବଳରେ ସୁନ୍ଦରଭାବରେ ମୋକଦ୍ଦମା ନିଷ୍ପତ୍ତି କରି ପାରୁଥିଲେ । ତାଙ୍କ ବିଚାରରେ କେହି ଅସନ୍ତୁଷ୍ଟ ନ ଥିଲେ । ସରକାର ସନ୍ତୁଷ୍ଟ ହୋଇ ୧୯୦୮ ମସିହାରେ ତାଙ୍କୁ ସେସନ୍ ଜଜର କ୍ଷମତା ପ୍ରଦାନ କରିଥିଲେ । ଏଥିରେ ପ୍ରଜାସାଧାରଣଙ୍କ ମନରେ ଅପାର ଆନନ୍ଦ ଜାତ ହୋଇଥିଲା ।

ଦୁଇ ପୁତ୍ରଙ୍କୁ ଆଜମିରସ୍ଥ ମେୟୋ କଲେଜରେ ପଢ଼ାଇବାର ସୁବନ୍ଦୋବସ୍ତ କରି ସାରି ମହାରାଜା ଶ୍ରୀରାମଚନ୍ଦ୍ର ଦେଶ ବିଦେଶ ଭ୍ରମଣରେ ମନ ବଳାଇଲେ । ଦେଶର ସର୍ବାଙ୍ଗୀନ ଉନ୍ନତି କରିବାକୁ ହେଲେ, ଉନ୍ନତ ଦେଶମାନଙ୍କରେ ବୁଲି ସେଠାର ଲୋକମାନଙ୍କର ଆଚାର ବ୍ୟବହାର ଓ ବାଣିଜ୍ୟ ଶିଳ୍ପଆଦି ପର୍ଯ୍ୟବେକ୍ଷଣ କରିବା ଆବଶ୍ୟକ । ସେମାନଙ୍କର ସମସ୍ତ ଅନୁଷ୍ଠାନ, ଶିକ୍ଷା ଦୀକ୍ଷା, କୃଷି ଆଦି ପାର୍ଥିବ ଉନ୍ନତିର ମୂଳ କାରଣ ଅନୁସନ୍ଧାନ ନ କଲେ କିପରି ନିଜ ରାଜ୍ୟର ଉନ୍ନତିକଳ୍ପେ ସେ ଚେଷ୍ଟା କରି ପାରିବେ ? ଏହି ଉଦ୍ଦେଶ୍ୟରେ ପୃଥିବୀମୟ ଭ୍ରମଣର ଗୋଟିଏ ଫର୍ଦ୍ଦ ତିଆରି କରାଗଲା । ୧୯୧୦ ମସିହା ମଇ ମାସ ୮ ତାରିଖ ଦିନ ଡାକ୍ତର ଓ ଅନୁଚରବର୍ଗଙ୍କୁ ସଙ୍ଗରେ ନେଇ ସେ ଜାପାନ ଉଦ୍ଦେଶ୍ୟରେ ସମୁଦ୍ରଯାତ୍ରା କଲେ । ଚୀନ୍ ଦେଶରେ ହଂକଂ

ଦ୍ୱୀପରେ ପହଞ୍ଚି ତତ୍ରତ୍ୟ ଶାସନକର୍ତ୍ତାଙ୍କ ନିମନ୍ତ୍ରଣକ୍ରମେ ତାଙ୍କ ଗୃହରେ ମଇ ମାସ ୨୬ ତାରିଖ ଦିନ ଭୋଜନ କରିଥିଲେ । ଚୀନ୍ ଦେଶର କେତେକ ସ୍ଥାନ ପରିଭ୍ରମଣ କରି ହଂକଂ ଫେରି ଆସିଲେ । ତତ୍‌ପରେ ସାଂଘାଇ ଏବ ନାଗାସିକା ସ୍ଥାନ ଦେଖି ଜୁନ୍ ମାସ ୧୩ ତାରିଖ ଦିନ ଜାପାନର ୟୋକୋହାମା ସହରରେ ପହଞ୍ଚିଲେ ।

ୟୋକୋହାମାଠାରୁ ଜାପାନର ରାଜଧାନୀ ଟୋକିଓ ଅଭିମୁଖରେ ଯାତ୍ରା କଲେ । ଟୋକିଓ ନଗରରେ ମହାସମାରୋହରେ ତାଙ୍କର ସମ୍ବର୍ଦ୍ଧନା ହୋଇଥିଲା । ସେ ଦଶ ଦିନ କାଳ ଜାପାନର ଜାତୀୟ ଅନୁଷ୍ଠାନମାନ ପରିଦର୍ଶନ କରି ତାହାର ଧର୍ମମନ୍ଦିର, ଶିଳ୍ପ ଓ କୃଷିର ଆଗାର, ସ୍କୁଲ କଲେଜ ଏବଂ ଯାଦୁଘର ତନ୍ନ ତନ୍ନ କରି ଦେଖିଥିଲେ । ସ୍ଥାନେ ସ୍ଥାନେ ମହାରାଜା ବକ୍ତୃତା ଦେଇ ସମସ୍ତଙ୍କର ପ୍ରଶଂସାଭାଜନ ହୋଇଥିଲେ । ଖବରକାଗଜ ସବୁ ତାଙ୍କର ଗୁଣଗାନରେ ମୁଖରିତ ହୋଇଥିଲା । ଜାପାନର ପ୍ରସିଦ୍ଧ ନେତା କାଉଣ୍ଟ୍ ଓକୁମା ତାଙ୍କୁ ସମାଦରରେ ଡାକି ନେଇ ନିଜ ଗୃହରେ ଭୋଜନର ବ୍ୟବସ୍ଥା କରିଥିଲେ ଏବଂ ମହାରାଜାଙ୍କର ସରଳ ସୁନ୍ଦର ବ୍ୟବହାରରେ ବିମୁଗ୍ଧ ହୋଇଥିଲେ ।

ବ୍ୟାରନ୍ କୋଣ୍ଡା ନାମକ ଆଉ ଜଣେ ପ୍ରସିଦ୍ଧ ଜାପାନୀ ତାଙ୍କ ଦଳ ପକ୍ଷରୁ ଅଭିନନ୍ଦନ ପ୍ରଦାନ କରିଥିଲେ । ଏହି ଅଭିନନ୍ଦନ ପତ୍ର ଗୋଟିଏ ସୁନ୍ଦର କାରୁକାର୍ଯ୍ୟଖଚିତ ରୌପ୍ୟ ଖୋଳ ମଧ୍ୟରେ ମହାରାଜାଙ୍କୁ ଅର୍ପିତ ହୋଇଥିଲା । ଜାପାନ ଦେଖି ସେ ଏତେ ମୁଗ୍ଧ ହୋଇଥିଲେ ଯେ, ପରଜନ୍ମରେ ଜାପାନରେ ଜନ୍ମଗ୍ରହଣ କରି ସେ ଦେଶବାସୀ ହେବେ ବୋଲି ସେଠାରେ ଏକାଧିକ ଥର ପ୍ରକାଶ କରିଥିଲେ ।

ଜୁନ୍ ୨୬ ତାରିଖ ଦିନ ମହାରାଜା ଜାପାନ ସମ୍ରାଟଙ୍କ ସଙ୍ଗେ ସାକ୍ଷାତ୍ କରିଥିଲେ । କିଓଟୋ, ନାରି ଓସାକା ଓ ନାଗୋୟା ପ୍ରଭୃତି

ସ୍ଥାନ ପରିଭ୍ରମଣ କରି ସେ ତାଙ୍କ ଜାପାନ ଭ୍ରମଣ ପରିସମାପ୍ତ କଲେ । ଜାପାନଠାରୁ ଅମେରିକା ଦେଇ ସେ ଇଂଲଣ୍ଡ ଯାତ୍ରା କଲେ ।

ଜାପାନଠାରୁ ପ୍ରଶାନ୍ତ ମହାସାଗରର ସ୍ଥିର ପ୍ରଶାନ୍ତ ବକ୍ଷରେ ଜାହାଜ ଚାଲିଥାଏ । ଉତ୍ତର ଦିଗ ଅଭିମୁଖରେ ଯାତ୍ରା କରୁଥିବାରୁ ଜୁଲାଇ ମାସ ଆରମ୍ଭରେ ମଧ୍ୟ ଭୟଙ୍କର ଶୀତର ପ୍ରକୋପ ହେଲା । ଭାଙ୍କୁବର ଦ୍ୱୀପରେ ଜାହାଜ ଲାଗିଲା । ମହାରାଜା ସେଠାର ଡାକ୍ତର ମନରୋ ସାହେବଙ୍କ ଆତିଥ୍ୟ ଗ୍ରହଣ କରି ପରିତୋଷ ଲାଭ କଲେ । ତତ୍ପରେ ବୃହତ୍ ହ୍ରଦସମୂହ ପାର ହୋଇ ଟରେଣ୍ଟୋରେ ଉପନୀତ ହୋଇଥିଲେ । ନାଏଗ୍ରା ଜଳପ୍ରପାତର ଭୟାବହ ସଞ୍ଚଳ ନୃତ୍ୟ ଦେଖିବାକୁ ଯାଇ ତାଙ୍କର ମନ ପ୍ରାଣ ବିମୁଗ୍ଧ ହୋଇଗଲା । ସେଠାରୁ ସେ ନଦୀ ମଧ୍ୟ ଦେଇ ମଣ୍ଟ୍ରିଲ୍ ଏବଂ କୁଇବେକ୍ ନାମକ ସ୍ଥାନ ଦର୍ଶନ କଲେ ।

ଅମେରିକାରେ ଉପନୀତ ହୋଇ ସ୍ଥଳପଥରେ ରେଲ୍ ଯୋଗେ ଓ ଜଳପଥରେ ଷ୍ଟିମରଯୋଗେ ବହୁ ସମୟ ଅତିବାହିତ ହେବାରୁ ମହାରାଜା କ୍ଳାନ୍ତ ହୋଇ ପଡ଼ିଥିଲେ । ଅମେରିକାରେ ସର୍ବତ୍ର ସମାଦର ଲାଭ କରି ପ୍ରୀତ ହୋଇଥିଲେ । ଅମେରିକାର ନିଉୟର୍କ ନଗରରେ ସେ ନଅ ଦିନ କାଳ କଟାଇଥିଲେ । ସେଠାରେ ଚାରି ଦିନ ପର୍ଯ୍ୟନ୍ତ ସେ ପେରିନ୍ ସାହେବଙ୍କ ଅତିଥି ଥିଲେ । ପେରିନ୍ ସାହେବ ତାଙ୍କୁ ନିଉୟର୍କର ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ସହ ଆଳାପ ପରିଚୟ କରାଇ ଦେଇଥିଲେ । ଅମେରିକାର ଅନେକ ବଡ଼ ବଡ଼ କଳ କାରଖାନା ଓ କୃଷି ବାଣିଜ୍ୟ ଦେଖି ନିଜ ଦେଶ ସଙ୍ଗେ ତୁଳନା କରି କ୍ଷଣକାଳପାଇଁ ମ୍ରିୟମାଣ ହୋଇଥିଲେ ଏବଂ କିପରି କେଉଁ ଉପାୟରେ ନିଜ ଦେଶରେ, ନିଜ ରାଜ୍ୟରେ ଏହିପରି କଳ କାରଖାନା ସ୍ଥାପନ କରି ଦେଶର ଶ୍ରୀବୃଦ୍ଧି କରି ପାରିବେ, ଅନ୍ୟ ଭାବନା ସଙ୍ଗେ ଏହି ଭାବନା ତାଙ୍କ ହୃଦୟକୁ ଅଧିକାର କରି ବସିଥିଲା ।

ଆମେରିକା ଭ୍ରମଣ ସାଙ୍ଗ କରି ଆଟଲାଣ୍ଟିକ ମହାସାଗର ଦେଇ ମହାରାଜା ଇଂଲଣ୍ଡ ଅଭିମୁଖରେ ଯାତ୍ରା କଲେ ଏବଂ ୧୯୧୦ ମସିହା ଅଗଷ୍ଟ ମାସ ୨୨ ତାରିଖ ଦିନ ଲଣ୍ଡନ୍ ସହରରେ ପହଞ୍ଚିଲେ । ଲଣ୍ଡନର ଆକାଶ ସର୍ବଦା ମେଘାଚ୍ଛନ୍ନ, ପ୍ରତିଦିନ ଝିପି ଝିପି ବର୍ଷା; କିଛିକାଳପାଇଁ ସୂର୍ଯ୍ୟକିରଣ ପଡ଼ିଲେ ଲୋକେ ଆନନ୍ଦରେ ମାତିଯାନ୍ତି । ଇଂଲଣ୍ଡରେ ଶୀତଦିନର ଥଣ୍ଡା ଭାରତୀୟ ପକ୍ଷରେ ଅସହ୍ୟ; ମାତ୍ର ଅଗଷ୍ଟ ସେପ୍ଟେମ୍ବର ମାସର ଶୀତ ଠିକ୍ ଦାର୍ଜିଲିଙ୍ଗର ଶୀତ ପରି । ଲଣ୍ଡନର ଜନକୋଳାହଳ ଏବଂ ଗାଡ଼ି, ଘୋଡ଼ା, ମଟର, ଟ୍ରାମ୍, ରେଲର ଘୋର ଘର୍ଘର ନିନାଦ ଓ କଳ କାରଖାନାର ଧୂଆଁ ସହ୍ୟ କରି ନ ପାରି ସେ ୧୨ ମାଇଲ ଦୂରବର୍ତ୍ତୀ ଗୋଟିଏ ଅପେକ୍ଷାକୃତ ନିର୍ଜନ ସ୍ଥାନରେ ଆଶ୍ରୟ ନେଇଥିଲେ ।

ଲଣ୍ଡନର ଇଣ୍ଡିଆ ଅଫିସକୁ ଏକାଧିକଥର ଯାଇ ମହାରାଜା ତତ୍କାଳୀନ ଭାରତମନ୍ତ୍ରୀ ଲର୍ଡ ମର୍ଲି ପ୍ରମୁଖ କେତେକ ବଡ଼ ବଡ଼ ରାଜକର୍ମଚାରୀମାନଙ୍କ ସଙ୍ଗେ ରାଜନୀତି ସମ୍ବନ୍ଧରେ ଆଲୋଚନା କରିଥିଲେ । ସେ ସମୟରେ ବରୋଦାର ଗାଏକବାଡ଼ ଓ ସାର୍ କେ. ଜି. ଗୁପ୍ତ ଲଣ୍ଡନରେ ଥିବାରୁ ସେମାନଙ୍କ ସଙ୍ଗେ ମଧ୍ୟ ଦେଖା କରିଥିଲେ । ସୁଦୂର ପ୍ରବାସରେ ଭାରତର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କୁ ଦେଖି ପରମ ତୃପ୍ତି ଲାଭ କଲେ । ଖାଦ୍ୟ ପେୟ ବିଷୟରେ ମଧ୍ୟ ଇଂଲଣ୍ଡରେ ତାଙ୍କର କୌଣସି ଅସୁବିଧା ହୋଇ ନ ଥିଲା । ଡାଲି, ଘିଅ, ଏମନ୍ତ କି, ଗଙ୍ଗାଜଳ ମଧ୍ୟ ବିଲାତରେ ବିକ୍ରି ହୁଏ । ଦେଶୀ ଢଙ୍ଗରେ ନିଜ ପାଚକଦ୍ୱାରା ଭାତ ଡାଲି ତରକାରି ରନ୍ଧନ କରାଇ ଖାଇବାର ସୁଯୋଗ ମଧ୍ୟ ତାଙ୍କୁ ବିଲାତରେ ମିଳିଥିଲା ।

ଶରୀରରେ ପୀଡ଼ା ଅନୁଭୂତ ହେବାରୁ ଲଣ୍ଡନର ଗୋଟିଏ ଡାକ୍ତର-ଖାନାରେ ତାଙ୍କୁ କ୍ଷତସ୍ଥାନ କଟାଇବାକୁ ପଡ଼ିଲା । ଅନେକ ଦିନ କଷ୍ଟ ଭୋଗ କରି ଆରୋଗ୍ୟ ଲାଭ କଲେ । ୧୯୧୦ ଅକ୍ଟୋବର ମାସରେ

ଭାରତସମ୍ରାଟଙ୍କ ସଙ୍ଗେ ସାକ୍ଷାତ୍ କରିବାର ସୁଯୋଗ ତାଙ୍କୁ ମିଳିଲା । ପାର୍ଲିଅମେଣ୍ଟ ମହାସଭାର ବୈଠକ ହୋଇଥିବାରୁ ଦର୍ଶକଭାବରେ ସେ ଯୋଗ ଦେଇଥିଲେ ।

ଜାପାନ, ଅମେରିକା ଓ ଇଂଲଣ୍ଡ ସ୍ୱାଧୀନ ଦେଶ । ସେଠାର ଜଳ ପବନ ମୁକ୍ତ – ପରାଧୀନତାର ଗନ୍ଧ ସେଠାରେ ନାହିଁ । ଜନପ୍ରାଣୀ ସେଠାରେ ମୁକ୍ତଭାବରେ ବିଚରଣ କରିବାର ଦେଖିବ । ନିଜର ଅଭିମତ ଲେଖାରେ ବା ବକ୍ତୃତାରେ ପ୍ରକାଶ କରିବାରେ ବାଧା ନାହିଁ । କର୍ମ ନେଇ ପ୍ରତ୍ୟେକେ ବ୍ୟସ୍ତ, ଅବାଧରେ ପ୍ରତ୍ୟେକେ ନିଜର କର୍ତ୍ତବ୍ୟ କରି ଚାଲି ଯାଉଅଛନ୍ତି, କାହାରିକୁ ଭ୍ରୁକ୍ଷେପ ନାହିଁ । ଚାକର ଓ ଖିଜମତ-ଗାରମାନେ ଆସି ନିଜ କର୍ତ୍ତବ୍ୟ କରି ଯାଉଅଛନ୍ତି, ସପ୍ତାହ ପୂରିଲେ ବିଲ୍ ଦେଇ ମଜୁରି ନେଇ ଯାଉଅଛନ୍ତି । ଚାକର ବୋଲି, ଗରିବ ବୋଲି ତୁମ୍ଭେ କାହାକୁ ଅପମାନିତ କରି ପାରିବ ନାହିଁ, କର୍ତ୍ତବ୍ୟରେ ତ୍ରୁଟି କଲେ ମଜୁରି କାଟି ପାରି, ମାତ୍ର ପାଟି ଫିଟାଇ ପାରିବ ନାହିଁ । ରାଜ୍ୟର ପ୍ରଜାଭାବରେ ପ୍ରତ୍ୟେକର ସ୍ୱତ୍ୱ ସମାନ । ସମୟର ମୂଲ୍ୟ ସେହି ଦେଶରେ, ଯେଉଁଠାରେ କର୍ମର ସ୍ୱାଧୀନତା ଅଛି ।

ଭାରତ କଥା କିନ୍ତୁ ବଡ଼ ସ୍ୱତନ୍ତ୍ର । ଏଠାର ଜଳ, ସ୍ଥଳ, ପବନ ଭାରାକ୍ରାନ୍ତ । ଦୁର୍ବଳକୁ ସବଳ ନିକଟରେ ସବୁବେଳେ ନତ ଅବସ୍ଥାରେ ଚଳିବାକୁ ହୁଏ । ଅନ୍ୟାୟ ଅତ୍ୟାଚାରର ଅବାଧ ପ୍ରତିବାଦ ଏଠାରେ ସହଜ ନୁହେଁ । ଭାରତର ସମାଜ, ଭାରତର ଧର୍ମ ଓ ଭାରତର ରାଜନୀତି ସବୁ ବନ୍ଧା ଗତିରେ ଚାଲିଅଛି, ଏପାଖ ସେପାଖ ହେବାର ଉପାୟ ନାହିଁ । ଏହି ନିଗଡ଼ରେ ଆବଦ୍ଧ ହୋଇ ମୁକ୍ତ ବାୟୁ ସେବନ କରିବାର ସୁଯୋଗ ଭାରତବାସୀର ନାହିଁ । ମହାରାଜାଙ୍କୁ ଏ ତୁଳନା ବଡ଼ ତୀବ୍ର, କଷ୍ଟକର ବୋଧ ହେଲା । ଦେଶର ଉନ୍ନତି କରିବାକୁ ହେଲେ, ସଭ୍ୟ ସ୍ୱାଧୀନ

ଜାତିମାନଙ୍କର ସମକକ୍ଷ ହେବାକୁ ହେବ । ସେମାନଙ୍କ ପରି କର୍ମରେ ଲିପ୍ତ ହେବାକୁ ହେବ । ବିଦେଶୀଠାରେ ଯାହା ଉପାଦେୟ, ଯାହା ଗ୍ରହଣ କରିବାର ଯୋଗ୍ୟ, ସେ ତାହା ଆନନ୍ଦରେ ଗ୍ରହଣ କରିଥିଲେ । ଜାପାନ ଓ ଆମେରିକାବାସୀମାନଙ୍କର ଅତିଥିସେବାପରାୟଣତା ଦେଖି ମୁଗ୍ଧ ହୋଇଥିଲେ ଏବଂ ସେ ସବୁ ଦେଶର ଭବିଷ୍ୟତ ଯେ ଅତି ଉଜ୍ଜ୍ୱଳ, ସେ ବିଷୟରେ ତାଙ୍କର ସନ୍ଦେହ କରିବାର କାରଣ ନ ଥିଲା ।

ମହାରାଜା ଶ୍ରୀରାମଚନ୍ଦ୍ର ଯେତେବେଳେ ବିଦେଶ ଭ୍ରମଣରେ ରତ ଥାଇ ରାଜ୍ୟରେ ଅନୁପସ୍ଥିତ ଥିଲେ, ସେହି ସମୟରେ ଗଭର୍ଣ୍ଣମେଣ୍ଟ ତାଙ୍କର ସୁଶାସନ, ଦକ୍ଷତା ଓ ସଚ୍ଚରିତ୍ରତାର ନିଦର୍ଶନସ୍ୱରୂପ ତାଙ୍କୁ ପୁରୁଷାନୁକ୍ରମେ 'ମହାରାଜା' ଉପାଧି ପ୍ରଦାନ କରିଥିଲେ । ବିଲାତରୁ ଫେରି ଆସି ମହାରାଜା କଲିକତା ପହଞ୍ଚିବା ସମୟରେ ବଙ୍ଗର ତତ୍କାଳୀନ ଲେଫ୍ଟେଣ୍ଟ ସର୍ ଏଡ଼ୱାର୍ଡ ବେକର ସାହେବ ତାଙ୍କୁ ସେହି ଉପାଧିର ସନନ୍ଦ ପ୍ରଦାନ କରିଥିଲେ ଏବଂ ତାଙ୍କ ଗୁଣାବଳୀର ଅଶେଷ ପ୍ରଶଂସା ଗାନ କରିଥିଲେ । ଏହି ଉପାଧିରେ ଭୂଷିତ ହୋଇ ୧୯୧୧ ମସିହାର ପ୍ରାରମ୍ଭରେ ସେ ଆସି ନିଜ ରାଜଧାନୀ ବାରିପଦାଠାରେ ପହଞ୍ଚିଲେ । ମୟୂରଭଞ୍ଜରେ ବିପୁଳ ଆୟୋଜନ ଲାଗିଲା । ମହାରାଜାଙ୍କର ଶୁଭାଗମନରେ ରାଜ୍ୟର ଶ୍ରୀ ପୁଣି ଫେରି ଆସିଲା ।

ମହାରାଜା ରାଜ୍ୟକୁ ଫେରି ଆସିବାର ଅତ୍ୟଳ୍ପ ଦିନ ମଧ୍ୟରେ ଖବର ଆସିଲା — ଭାରତସମ୍ରାଟ୍ ଦିଲ୍ଲୀ ଦରବାରକୁ ଶୁଭାଗମନ କରିବେ । ଦେଶର ଘରଅଗେ ଚହଳ ପଡ଼ିଗଲା । ଏପର୍ଯ୍ୟନ୍ତ କୌଣସି ଭାରତ-ସମ୍ରାଟ୍ ଦେଶ ଛାଡ଼ି ଭାରତବର୍ଷକୁ ଆସି ନ ଥିଲେ । ସମ୍ରାଟଙ୍କ ଅଭିନନ୍ଦନ ସକାଶେ ସେ କଅଣ କରି ପାରନ୍ତି, ଏ ବିଷୟ ନେଇ ମହାଚିନ୍ତାରେ ପଡ଼ିଲେ । ସ୍ଥିର ହେଲା, ସମ୍ରାଟ୍ ଯେତେବେଳେ କଲିକତା ଆସିବେ,

ସେଠାରେ ତାଙ୍କ ସମ୍ବର୍ଦ୍ଧନା ପାଇଁ ଯେଉଁ ସମାବେଶ କରାଯିବ, ତହିଁ ମଧ୍ୟରେ ମୟୂରଭଞ୍ଜର ଓଡ଼ିଆ ପାଇକମାନଙ୍କ 'ଛଉନାଚ' ମଧ୍ୟ ଦିଆଯିବ ।

ଛଉନାଚ ଓଡ଼ିଆ ପାଇକମାନଙ୍କର ଜାତୀୟ ନାଚ । ଏହି ନାଚ ଜାତିର ପୁରାତନ କାଳର ସ୍ୱାଧୀନତା, ବଳ, ବୀର୍ଯ୍ୟ ଓ କ୍ଷମତାର ପରିଚାୟକ । ଆଜି ସେ ସ୍ୱାଧୀନତା ନାହିଁ, ସେ ବଳବୀର୍ଯ୍ୟ ଓ କ୍ଷମତାର ଲେଶ ନାହିଁ । ଓଡ଼ିଆ ଆଜି ସବୁ ଦିଗରେ ମ୍ରିୟମାଣ, ହୀନ ସତ, ମାତ୍ର ଦିନ ଥିଲା, ଯେତେବେଳେ ଓଡ଼ିଆ ବୀର ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଅଧିକାର କରି ନିଜ ବାହୁବଳର ତେଜ ଭାରତରେ ବିସ୍ତାରଣ କରି ପାରିଥିଲା । କର୍ପୂର ଯାଇ କନା ଅଛି, ସେ ସବୁ ଯାଇ ଆଜି କେବଳ 'ଛଉନାଚ' ଅଛି । ସେହି ଓଡ଼ିଆ ପାଇକ ଓ ଖଣ୍ଡାଏତମାନଙ୍କ ବଂଶଧର ଅଛନ୍ତି ।

ଛଉନାଚ ସମ୍ରାଟ୍ ଦେଖିବେ, କେତେ ବଡ଼ ବଡ଼ ଲୋକେ ଦେଖିବେ, କଲିକତା ପରି ଏଡ଼େ ବଡ଼ ସହରରେ ହେବ । ଦାୟିତ୍ୱ ଗୁରୁତର । ନାଚ ଯଦି ହାସ୍ୟାସ୍ପଦ ହୁଏ, ସ୍ଥାନର ନିନ୍ଦା, ଜାତିର ନିନ୍ଦା । ମହାରାଜା ଏ ଗୁରୁ ଦାୟିତ୍ୱ ବୁଝିଲେ । ଅନ୍ୟ କାହାରି ଉପରେ ଏ ବିଷୟର ଭାର ପକାଇ ଦେଇ ନିଶ୍ଚିନ୍ତ ରହିବାର ପାତ୍ର ସେ ନୁହନ୍ତି । ନିଜେ ଏ ଭାର ବହନ କଲେ । ପାଇକମାନଙ୍କପାଇଁ ନାନାପ୍ରକାର ମୂଲ୍ୟବାନ୍ ବସନଭୂଷଣ କିଣାଗଲା, ଅସ୍ତ୍ର ଶସ୍ତ୍ର ନିର୍ମିତ ହେବାକୁ ଲାଗିଲା । ଯୁବକ ରୂପବାନ୍ ଲୋକ ଦେଖି ନାଚ ନିମିତ୍ତ ମନୋନୀତ କରାଗଲା । ସବୁ ହେଲା ସତ, ଏବେ ସେମାନଙ୍କୁ ଉତ୍ତମ ଶିକ୍ଷା ଦେଇ ଉପଯୁକ୍ତ କରିବାକୁ ହେବ । ଦିନରେ ଦୁଇବେଳା ଶିକ୍ଷା ଦିଆଯିବାର ସ୍ଥିର ହେଲା । ନିଜେ ମହାରାଜା

ଓ ତାଙ୍କ ଭ୍ରାତା ରାଉତରାୟ ସାହେବ ବହୁ କଷ୍ଟ ସ୍ୱୀକାର କରି ପାଇକ-ମାନଙ୍କୁ ଶିକ୍ଷା ଦେବାକୁ ଲାଗିଲେ । ବ୍ୟାପାର ବଡ଼ ସହଜ ନୁହେଁ, ଶରୀରର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ ବିଭିନ୍ନ ଦିଗରେ, ବିଭିନ୍ନ ଭାବରେ ଚାଳନା କରିବାକୁ ହେବ । ମହାରାଜା କେବଳ ମୌଖିକ ଉପଦେଶ ଦେଇ ସନ୍ତୁଷ୍ଟ ରହୁ ନ ଥିଲେ, ନିଜେ ସେହିପରି ଅଙ୍ଗଚାଳନା କରି ପାଇକମାନଙ୍କୁ ଦେଖାଇ ଦେଉଥିଲେ । ଶରୀର ଗଳଦ୍‌ଘର୍ମ ହୋଇ ଯାଉଥିଲା, ନିଶ୍ୱାସ ଘନ ଘନ ବହୁଥିଲା, ତଥାପି ସେ କ୍ଷାନ୍ତ ହେଉ ନ ଥିଲେ ।

ଦିନେ ନୁହେଁ, ଅଧେ ନୁହେଁ, ମାସକୁ ମାସ ମହାରାଜା ଏହିପରି ଦୁଇଓଳି ପାଇକମାନଙ୍କୁ ଶିକ୍ଷା ଦେବାକୁ ଲାଗିଲେ । ମହାରାଜାଙ୍କୁ ଏପରି କରିବାର ଦେଖି ପାଇକମାନେ ପ୍ରାଣପଣେ ଚେଷ୍ଟା କରି କୃତକାର୍ଯ୍ୟ ହେଲେ । ନାଚ କିପରି ଏବଂ କେତେଦୂର ହୋଇଅଛି ଏବଂ ତାହା ସମ୍ରାଟଙ୍କର ଦେଖିବାର ଉପଯୁକ୍ତ ହେବ କି ନା, ପରୀକ୍ଷା କରିବା ନିମିତ୍ତ ସମାରୋହର ଅନ୍ୟତମ କର୍ତ୍ତା ସର୍ ପ୍ରଦ୍ୟୋତକୁମାର ଠାକୁର ମହୋଦୟ ଓ ମି. ଲାସେଲ୍‌ସ ସାହେବ ମୟୂରଭଞ୍ଜ ଆସିଲେ ଏବଂ ନାଚ ଦେଖି ଅକୁଣ୍ଠିତଚିତ୍ତରେ ପ୍ରକାଶ କଲେ ଯେ, ଛଉନାଚ ଅନ୍ୟାନ୍ୟ ସବୁ ଆୟୋଜନ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର କରିବ ।

ମହାରାଜା ଶ୍ରୀରାମଚନ୍ଦ୍ର ମହାରାଣୀଙ୍କ ସହ ୧୯୧୦ ମସିହା ଡିସେମ୍ବର ୧୨ ତାରିଖ ଦିନ ଦିଲ୍ଲୀ ଦରବାରରେ ଯୋଗ ଦେଇ-ଥିଲେ । ତତ୍ପରେ ସମ୍ରାଟ୍ ଓ ସମ୍ରାଜ୍ଞୀ ଯେତେବେଳେ କଲିକତା ଆସିଲେ, ସେ ସମୟରେ ଅନ୍ୟାନ୍ୟ ଆୟୋଜନ ମଧ୍ୟରେ ଛଉନାଚ କରି ଯାଇଥିଲା । ସମ୍ରାଟ୍, ସମ୍ରାଜ୍ଞୀ ଓ ଉପସ୍ଥିତ ଦର୍ଶକମଣ୍ଡଳୀ ଏ ନାଚ ଦେଖି ମୁଗ୍ଧ ହୋଇଗଲେ ଏବଂ ପ୍ରକାଶ୍ୟଭାବରେ ଏହା ସର୍ବଶ୍ରେଷ୍ଠ

ଦର୍ଶନୀୟ ବସ୍ତୁ ବୋଲି ପ୍ରକାଶ କରିଥିଲେ । ଏହି ସମୟରେ ଟିକାଏତ ଶ୍ରୀ ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଦେଓ ସାମ୍ରାଜ୍ଞୀଙ୍କର ସହଚର ହୋଇ ସମ୍ମାନିତ ହୋଇଥିଲେ ।



# ପଞ୍ଚମ ଅଧ୍ୟାୟ



## ଶାସନ ସଂସ୍କାର

ପାଠକମାନଙ୍କ ମନେ ଥିବ, ଶ୍ରୀରାମଚନ୍ଦ୍ରଙ୍କ ପିତା ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଙ୍କ ଶାସନ ପୂର୍ବରୁ ମୟୂରଭଞ୍ଜର ଶାସନପ୍ରଣାଳୀ ଉପରି ବିଶୃଙ୍ଖଳ ହୋଇ ପଡ଼ିଥିଲା ଏବଂ ମହାରାଜା କୃଷ୍ଣଚନ୍ଦ୍ର ଉପରି ସବୁ ଭିତ୍ତି ସ୍ଥାପନ କରି ଶାସନଯନ୍ତ୍ରର ମୂଳପତ୍ତନ କରି ଯାଇଥିଲେ । ଅକାଳରେ ନିତାନ୍ତ ଯୁବକ ଅବସ୍ଥାରେ ନିଷ୍ଠୁର କାଳ ତାଙ୍କୁ ଅନ୍ତର କରି ନ ଥିଲେ, ସେ ରାଜ୍ୟକୁ ବହୁ ଉନ୍ନତ କରିବାର ପ୍ରୟାସ ପାଇଥାନ୍ତେ । ପିତାଙ୍କ ମୃତ୍ୟୁ ପରେ ଶ୍ରୀରାମଚନ୍ଦ୍ର ନାବାଳକ ଥିବାରୁ ଦୀର୍ଘ ଦଶ ବର୍ଷ-କାଳ ରାଜ୍ୟ ସରକାରଙ୍କ ହାତରେ ପଡ଼ିଲା । ସରକାର ମୟୂରଭଞ୍ଜର ଶାସନଯନ୍ତ୍ର ନ ବଦଳାଇ ପୂର୍ବ ପରି ଶାସନ କରି କେତେକ ଉନ୍ନତି ମଧ୍ୟ କରି ପାରିଥିଲେ । ରାଜଗାଦିରେ ବସିବା ଦିନୁଁ ଶ୍ରୀରାମଚନ୍ଦ୍ରଙ୍କ ଉପରେ ରାଜ୍ୟର ସମସ୍ତ ଗୁରୁ ଭାର ନ୍ୟସ୍ତ ହେଲା ।

ଜଙ୍ଗଲ ରାଜ୍ୟର ଅବସ୍ଥାରୁ ମୟୂରଭଞ୍ଜ ଉପରି ସମଗ୍ର ପ୍ରଦେଶ ମଧ୍ୟରେ ସବୁ ବିଷୟରେ ଅଗ୍ରଣୀ ହୋଇ ପାରିଥିଲା ଏବଂ ଭାରତବର୍ଷର ବକ୍ଷରେ ସୁଶାସିତ ଦେଶୀୟ ରାଜ୍ୟମାନଙ୍କ ସଙ୍ଗେ ସମକକ୍ଷ ହୋଇଥିଲା,

ଏହାର ଉତ୍ତର ଦେବାକୁ ହେଲେ, ତାହା ମହାରାଜା ଶ୍ରୀରାମଚନ୍ଦ୍ରଙ୍କ କର୍ମକୁଶଳତା, ତ୍ୟାଗ, ମହାନୁଭବତା ଓ ଆଜୀବନ କର୍ମମୟ ଉଦ୍ୟମର ଫଳ ବ୍ୟତୀତ ଅନ୍ୟ କିଛି ବୋଲି କହିବାର ଉପାୟ ନାହିଁ । ରାଜଗାଦିରେ ବସିବା ଦିନଠାରୁ ଆରମ୍ଭ କରି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଏତେ ସହଜ ଓ ଅଯାଚିତ-ଲଭ୍ୟ ବିଷୟବାସନା ଓ ବିଳାସ ପରିତ୍ୟାଗ କରି, ନିଜର ଗୁରୁ ଦାୟିତ୍ୱବୋଧରେ ରାଜ୍ୟର, ତଥ-ପ୍ରଜାମାନଙ୍କର ହିତ ନିମିତ୍ତ ସେ ଯେପରି ଜୀବନ ଉତ୍ସର୍ଗ କରିଯାଇ ଅଛନ୍ତି, ତାହା ପୁରାଣଯୁଗରେ ସମ୍ଭବ ହେଲେ ସୁଦ୍ଧା ଅଧୁନିକ ତଥ କଥିତ ସଭ୍ୟଯୁଗରେ ବିରଳ । ରାଜ୍ୟ ହାତକୁ ନେବାର ଦୁଇ ବର୍ଷ ପୂର୍ବରୁ ତାଙ୍କୁ ରାଜକାର୍ଯ୍ୟ ପରିଚାଳନାର ସମସ୍ତ ବିଷୟ ଶିଖିବାକୁ ପଡ଼ିଥିଲା ଏବଂ ସେହି ସମୟରେ ଏକ ମୁହୂର୍ତ୍ତ ସେ ଅପବ୍ୟୟ ନ କରି ମନୋଯୋଗ ସହିତ ସମସ୍ତ ଶିଖିବାକୁ ଲାଗିଥିଲେ । ରାଜ୍ୟ ହାତକୁ ଆସିବା ପରେ ବୀରପୁରୁଷ ପରି ସେ କର୍ତ୍ତବ୍ୟକର୍ମରେ ପ୍ରବୃତ୍ତ ହେଲେ । ରାଜ୍ୟରେ କେଉଁ ଉପାୟରେ ସୁଶାସନ ପ୍ରବର୍ତ୍ତିବ, କେଉଁ ଉପାୟ ଅବଲମ୍ବନ କଲେ ଜନସାଧାରଣ ନ୍ୟାୟ ବିଚାର ପାଇବେ ଏବଂ ରାଜ୍ୟର ଆର୍ଥିକ ଉନ୍ନତି ସମ୍ଭବପର ହେବ—ଏହି ବିଷୟ ସେ ଦିବାରାତ୍ର ଅନୁଧ୍ୟାନ କରୁଥିଲେ ଏବଂ ଯାହା ଶ୍ରେୟସ୍କର ବୋଲି ମନେ କରୁଥିଲେ, ତାହା କାର୍ଯ୍ୟରେ ପରିଣତ କରିବା ନିମିତ୍ତ କୌଣସି ଚେଷ୍ଟାରେ ତ୍ରୁଟି କରୁ ନ ଥିଲେ ।

ନିଜେ ସ୍ୱେଚ୍ଛାଚାରୀ ହୋଇ ରାଜ୍ୟଶାସନ କରିବେ, ଏ ପ୍ରବୃତ୍ତି ତାଙ୍କୁ ସ୍ପର୍ଶ କରି ପାରି ନ ଥିଲା । ପାଞ୍ଚ ଜଣ, ପଚିଶ ଜଣ ଉପଯୁକ୍ତ ଲୋକ ନେଇ ସେ ପ୍ରତ୍ୟେକ ଗୁରୁତର ବିଷୟର ଆଲୋଚନାରେ ପ୍ରବୃତ୍ତ ହେଉଥିଲେ । ଯେତେ ନୀଚ ହେଲେ ସୁଦ୍ଧା ଅନ୍ୟର ମତ ପ୍ରତି ତାଙ୍କର ଯଥେଷ୍ଟ ସମାଦର ଥିଲା । ମନରେ ପ୍ରବଳ ଈଶ୍ୱରବିଶ୍ୱାସ ତାଙ୍କୁ ନିମ୍ନ,

ଧୀର ଓ ବିନୟୀ କରି ଦେଇଥିଲା । ସେ ଯେ ମହାତ୍ମା, ଭୁଲ ଭ୍ରାନ୍ତି ତାଙ୍କଦ୍ୱାରା ସମ୍ଭବ ନୁହେଁ, ଏହା ଭାବିବା ର ଅବସର ସେ ପାଇ ନାହାନ୍ତି ।

ଦେବାନ, ରାଜ୍ୟର ବରିଷ୍ଠପଦସ୍ଥ, ଇଞ୍ଜିନିୟର, ପୁଲିସ ବିଭାଗର ଅଧ୍ୟକ୍ଷ ଏବଂ ଦୁଇଜଣ ଅବୈତନିକ ସଭ୍ୟଙ୍କୁ ନେଇ ୧୮୯୩ ମସିହାରେ ସେ "ମୟୂରଭଞ୍ଜ ଷ୍ଟେଟ୍ କାଉନ୍ସିଲ୍" ନାମକ ଗୋଟିଏ ସଭା ଗଠନ କରି ନିଜେ ତାହାର ସଭାପତି ହୋଇଥିଲେ । ଏହି ସଭାଦ୍ୱାରା ରାଜ୍ୟର ଯାବତୀୟ କାର୍ଯ୍ୟ ନିର୍ବାହିତ ହେଉଥିଲା । ରାଜ୍ୟରେ କୌଣସି ନୂତନ ବିଧିବିଧାନର ପ୍ରବର୍ତ୍ତନ ଓ ଶାସନପ୍ରଣାଳୀର ପ୍ରତ୍ୟେକ ବିଭାଗର ପରିବର୍ତ୍ତନ ଓ ପରିବର୍ଦ୍ଧନ ଏହି ସଭାଦ୍ୱାରା ପରିଗୃହୀତ ହେଉଥିଲା । ହୁକୁମ୍ ଓ ସର୍କୁଲର ଜାରି କରିବା, ବାର୍ଷିକ ଆୟବ୍ୟୟର ବ୍ୟବସ୍ଥା କରିବା ଏ ସଭାର ଅନ୍ୟତମ କାର୍ଯ୍ୟ ଥିଲା । ପ୍ରତ୍ୟେକ ବିଷୟରେ କାଉନ୍ସିଲର ସଭ୍ୟମାନଙ୍କ ମତାମତ ନେଇ ମହାରାଜା କାର୍ଯ୍ୟରେ ବ୍ରତୀ ହେଉଥିଲେ ।

ପୂର୍ବରେ ଫୌଜଦାରୀ ଓ ଦେବାନୀସମ୍ପର୍କୀୟ ମୋକଦ୍ଦମାର କୌଣସି ଲିପିବଦ୍ଧ କାର୍ଯ୍ୟପ୍ରଣାଳୀ ନ ଥିଲା । ବ୍ରିଟିଶ ଭାରତ ପ୍ରଚଳିତ ଦଣ୍ଡବିଧି ଓ କାର୍ଯ୍ୟବିଧି ଆଇନମାନ ମହାରାଜା ସର୍ବପ୍ରଥମେ ଚଳାଇଲେ । ମହାରାଜାଙ୍କର ଅସାଧାରଣ ଆଇନ ଜ୍ଞାନ ଥିଲା ଏବଂ ରାଜ୍ୟର ଉନ୍ନତି ସଙ୍ଗେ ଯେଉଁ ସବୁ ବିଧି ଅବଶ୍ୟକ ମନେ ହେଉଥିଲା, ସେ ସବୁ ଅକୁଣ୍ଠିତ ଚିତ୍ତରେ ସେ ଦେଶରେ ଚଳାଉଥିଲେ । ପ୍ରଜାସ୍ୱତ୍ୱ ଅାଇନ, ସର୍ଭେ ଓ ବନ୍ଦୋବସ୍ତ ଅାଇନ, ତମାଦି ଆଇନ, କୋର୍ଟଫିସ୍ ଓ ଷ୍ଟାମ୍ପ ଆଇନ, ରେଜେଷ୍ଟ୍ରି ଆଇନ, ମଠ ଓ ମନ୍ଦିରସମ୍ପର୍କୀୟ ଆଇନ, ପୁଲିସ ଆଇନ, ଅସ୍ତ୍ର ଶସ୍ତ୍ର ଆଇନ ଆଦି ବ୍ରିଟିଶ୍ ଭାରତପ୍ରଚଳିତ ବହୁ ବିଧି ବିଧାନ ମହାରାଜାଙ୍କ ସମୟରେ ମୟୂରଭଞ୍ଜ ରାଜ୍ୟରେ ସ୍ଥାପିତ ହୋଇଥିଲା ।

ଷ୍ଟେଟ୍ କାଉନ୍‌ସିଲ୍ ଦ୍ୱାରା ଏହି ସବୁ ପ୍ରଚଳିତ ଆଇନର ଯଥାଯୋଗ୍ୟ ପରିବର୍ତ୍ତନ ମଧ୍ୟ ହେଉଥିଲା ।

ଏହି ସବୁ ସୁଶାସନର ପ୍ରଚଳନ ପ୍ରଭାବରୁ ମୟୂରଭଞ୍ଜ ଅଳ୍ପ-ସମୟ ମଧ୍ୟରେ ଗୋଟିଏ ସୁଶାସିତ ଗବର୍ଣ୍ଣମେଣ୍ଟଶାସିତ ଜିଲ୍ଲା ସଙ୍ଗେ ସମକକ୍ଷ ହୋଇ ପାରିଥିଲା । ଦେବାନୀ, ଫୌଜଦାରୀ ଓ ରାଜସ୍ୱବିଭାଗ ପୃଥକ୍ କରାଯାଇ ବିଭିନ୍ନ କର୍ମଚାରୀଙ୍କ ଉପରେ ନ୍ୟସ୍ତ କରାଗଲା । ସର୍ଭେ, ବନ୍ଦୋବସ୍ତ, ରାଜକୋଷ ଏବଂ ପୁଲିଶ ବିଭାଗମାନ ମଧ୍ୟ ସେହିପରି ପୃଥକ୍ କରାଯାଇଥିଲା ।

ମହାମନା ଗୋଖଲେ ବିଚାର ଓ ଶାସନବିଭାଗକୁ ସ୍ୱତନ୍ତ୍ର କରିବା ପାଇଁ ସରକାରଙ୍କ ନିକଟରେ କେତେ ଅରଣ୍ୟରୋଦନ କରି ନାହାନ୍ତି ! ଆଜି ସୁଦ୍ଧା ତାହା ବ୍ରିଟିଶ ରାଜତ୍ୱରେ ସମ୍ଭବପର ହୋଇ ପାରି ନାହିଁ । ମାତ୍ର ମହାରାଜା ଶ୍ରୀରାମଚନ୍ଦ୍ର ଅନୁନ୍ନତ ମୟୂରଭଞ୍ଜ ପରି ସ୍ଥାନରେ ବହୁପୂର୍ବେ ଏ ଦୁଇ ବିଭାଗକୁ ସ୍ୱତନ୍ତ୍ର କରି ଦେଇଥିଲେ । ମୟୂରଭଞ୍ଜର ସଦର ସବ୍-ଡିଭିଜନରେ ଏ ଦୁଇ ବିଭାଗକୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର କରା ହୋଇଥିଲା, ପରେ ଅନ୍ୟ ଦୁଇ ସବ୍-ଡିଭିଜନରେ ମଧ୍ୟ ଏ ସଂସ୍କାର ଆଂଶିକ ପ୍ରଚଳିତ ହୋଇଥିଲା । ଏହା କରିବା ଦ୍ୱାରା ତାଙ୍କ ନିଜର କ୍ଷମତା ଅତ୍ୟନ୍ତ ସଙ୍କୁଚିତ ହୋଇଥିଲା । ଶାସକଭାବରେ ନିଜେ ମହାରାଜା ଯେଉଁ ଆଦେଶ ଦେଉଥିଲେ, ବିଚାର ବିଭାଗରେ ତାହାର ଦୋଷାଦୋଷ ପ୍ରମାଣିତ ହେବାର ସୁଯୋଗ ଥିଲା । ନିଜର କାଳେ କୌଣସି ବିଷୟରେ ଭ୍ରମ ପ୍ରମାଦ ରହିଯିବ, ଏହିପରି କୌଣସି ଆଦେଶଦ୍ୱାରା କାଳେ ପ୍ରଜା-ସାଧାରଣଙ୍କ ଉପରେ କେବେ ହେଲେ ଅନ୍ୟାୟ ବ୍ୟବହାର ହେବ, ଏହି ଆଶଙ୍କା କରି ସେ ଏ ଦୁଇ ବିଭାଗକୁ ପୃଥକ୍ କରି ଦେଇଥିଲେ ।

ତାଙ୍କର କୌଣସି ଆଦେଶର ବିଚାର ହେଲେ ଅମ୍ଳାନବଦନରେ ସେ ନିଜର ଭୁଲ୍ ଭ୍ରାନ୍ତି ସ୍ୱୀକାର କରୁଥିଲେ ।

ଧନ୍ୟ ମହାରାଜ ଶ୍ରୀରାମଚନ୍ଦ୍ର ! ତୁମ୍ଭର ମାଟି ଦେହ ନାହିଁ ସତ, ମାତ୍ର ଯେତେ ଦିନ ଓଡ଼ିଆର ଧମନୀରେ ରକ୍ତର ପ୍ରବାହ ଚାଲୁଥିବ, ଯେତେ ଦିନ ଏ ଜାତି ଭୂପୃଷ୍ଠରୁ ଲୋପ ପାଇ ନାହିଁ, ତେତେ ଦିନ ତୁମ୍ଭେ ଏ ଜାତିର ଆଦର୍ଶ ରାଜା, ତେତେ ଦିନ ତୁମ୍ଭେ ରାଜର୍ଷି ବୋଲି ଭାବୀ ବଂଶଧରମାନଙ୍କଦ୍ୱାରା ପୂଜା ପାଇବ । ଭଗବାନ୍ କରନ୍ତୁ, ଦିନ ଆସିବ, ତୁମ୍ଭର ପୁଣ୍ୟମୟ ଜୀବନର କାର୍ଯ୍ୟ ଓଡ଼ିଶାର ନରପତିମାନଙ୍କୁ ଉଦ୍‌ବୁଦ୍ଧ, ଅନୁପ୍ରାଣିତ କରିବ — ଜାତିର ପ୍ରତ୍ୟେକ ନରନାରୀ ତୁମ୍ଭର ପୂଜା କରି ଧନ୍ୟ ହେବେ ।

ମହାରାଜା ମୟୂରଭଞ୍ଜ ରାଜ୍ୟକୁ ଚାରି ସବ୍-ଡିଭିଜନରେ ବିଭକ୍ତ କଲେ । ଯଥା—ସଦର, ବ୍ରାହ୍ମଣଘାଟି, ପାଞ୍ଚପୀଢ଼ ଏବଂ କାପ୍ତିପଦା । ପ୍ରତ୍ୟେକ ସବ୍-ଡିଭିଜନ୍ ଜଣେ ଲେଖାଏଁ କର୍ମଚାରୀଙ୍କ କର୍ତ୍ତୃତ୍ୱାଧୀନରେ ଥିଲା । ସଦର ସବ୍-ଡ଼ିଭିଜନ୍ ବ୍ୟତୀତ ଅନ୍ୟ ସବ୍-ଡ଼ିଭିଜନରେ କର୍ମଚାରୀମାନେ ଦେବାନୀ ଓ ଫୌଜଦାରୀ ମୋକଦ୍ଦମାମାନ ବିଚାର କରୁଥିଲେ । ସଦର ସବ୍-ଡିଭିଜନ୍ କଲେକ୍ଟର ନାମକ କର୍ମଚାରୀଙ୍କ ଅଧୀନରେ ଥିଲା, ଏହାଙ୍କର କୌଣସି ଦେବାନୀ କ୍ଷମତା ନ ଥିଲା । ମହାରାଜା ନିଜେ ରାଜ୍ୟର ଶାସନ-ବିଭାଗର ସର୍ବେସର୍ବା ଥିଲେ ଏବଂ ପୁଲିସ୍ ବିଭାଗ, ଜଙ୍ଗଲ ବିଭାଗ, ପୂର୍ତ୍ତ ବିଭାଗ, ଶିକ୍ଷା ଏବଂ ସ୍ୱାସ୍ଥ୍ୟ ବିଭାଗ ତାଙ୍କର ସମ୍ପୂର୍ଣ୍ଣ କର୍ତ୍ତୃତ୍ୱାଧୀନରେ ଥିଲା । ଦେବାନ୍ ରାଜସ୍ୱ ବିଭାଗର ସର୍ବେସର୍ବା ଥାଇ ବନ୍ଦୋବସ୍ତ, ସର୍ଭେ ଓ କୃଷି ବିଭାଗମାନ ବୁଝୁଥିଲେ । ସବୁ ସବ୍-ଡିଭିଜନାଲ୍ ଅଫିସରମାନେ କଲେକ୍ଟର ଭାବରେ ଦେବାନଙ୍କ ଅଧୀନ ଥିଲେ । ସବ୍-ଜଜ୍ ଓ ଅନ୍ୟାନ୍ୟ ସବ୍-ଡିଭିଜନାଲ୍ ଅଫିସର-

ମାନେ ବିଗୃର ବିଭାଗର ଷ୍ଟେଟ୍ ଜଜ୍ ବା ପ୍ରଧାନ ବିଗୃରପତିଙ୍କ ଅଧୀନ ଥିଲେ ।

ଶାସନ ବିଭାଗ ସୁଚାରୁରୂପେ ଚଳାଇବା ନିମିତ୍ତ ଗଭର୍ଣ୍ଣମେଣ୍ଟଙ୍କ ଅନୁକରଣରେ ପୁଲିସ୍ ବିଭାଗ ନୂତନ ପ୍ରତିଷ୍ଠିତ ହୋଇଥିଲା । ତେତେବେଳେ କୌଣସି ନିର୍ଦ୍ଦିଷ୍ଟ ପୁଲିସ ବିଭାଗ ନ ଥିଲା; ସବୁ କାର୍ଯ୍ୟ ସର୍ଦ୍ଦାରମାନେ ନିର୍ବାହ କରୁଥିଲେ । ଏହି ସର୍ଦ୍ଦାରମାନେ ଶିକ୍ଷା, ଦୀକ୍ଷା ଅଭାବରୁ ଠିକ୍ ରୂପେ କାର୍ଯ୍ୟ କରି ପାରୁ ନ ଥିଲେ । ଗ୍ରାମ ଚୌକିଦାରମାନେ ଗ୍ରାମବାସୀମାନଙ୍କଠାରୁ କିଛି କିଛି ସାହାଯ୍ୟ ନେଇ କାର୍ଯ୍ୟ କରୁଥିଲେ ଏବଂ ସେମାନଙ୍କ ଉପରେ ଷ୍ଟେଟର କୌଣସି କର୍ତ୍ତୃତ୍ୱ ନ ଥିଲା । ଏ ପ୍ରଥା ଉଠାଇ ଦିଆଗଲା । କ୍ରମେ ଥାନା ଓ ଆଉଟ୍ ପୋଷ୍ଟ୍ ମାନ ସ୍ଥାପିତ ହେବାକୁ ଲାଗିଲା ଏବଂ ଶିକ୍ଷିତ ବ୍ୟକ୍ତିମାନେ ନିଯୁକ୍ତ ହେଲେ । ଚୌକିଦାରୀ ଟାକ୍ସ ଆଦାୟ ହୋଇ ଚୌକିଦାରମାନଙ୍କୁ ନିୟମିତ ଦରମା ଦିଆଯିବାର ବ୍ୟବସ୍ଥା ହେଲା ଏବଂ ସେମାନେ ଷ୍ଟେଟ୍ର କର୍ତ୍ତୃତ୍ୱାଧୀନରେ ଆସିଲେ । ଗ୍ରାମ୍ୟ ପଞ୍ଚାଏତ ମଧ୍ୟ ସୃଷ୍ଟି କରାଗଲା ଓ ଗ୍ରାମର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଇଉନିୟନମାନଙ୍କର ପ୍ରେସିଡେଣ୍ଟ୍ ଓ ସଭ୍ୟ ନିଯୁକ୍ତ କରାଗଲା । ୧୯୧୧ ମସିହାରେ ମୟୂରଭଞ୍ଜରେ ୧୩ଟି ଥାନା, ୧୦ଟି ଆଉଟ ପୋଷ୍ଟ୍ ସ୍ଥାପିତ ହୋଇଥିଲା ଏବଂ ଚୌକିଦାରମାନଙ୍କ ବ୍ୟତୀତ ୨୫ ଜଣ ପୋଲିସ୍ କର୍ମଚାରୀ ଓ ୨୭୨ ଜଣ କନେଷ୍ଟବଲ ନିଯୁକ୍ତ ହୋଇଥିଲେ ।

ମହାରାଜାଙ୍କ ପୂର୍ବରୁ ରାଜକାର୍ଯ୍ୟ କେତେକ ଜଣଙ୍କ ଦ୍ୱାରା ପୁରୁଷାନୁକ୍ରମେ ଚଳି ଆସୁଥିଲା । କର୍ମଚାରୀମାନେ ବେତନ ସ୍ଥଳରେ ଜାୟଗିର ପାଇ ଆସୁଥିଲେ ଏବଂ କେତେକ ସ୍ଥଳରେ ମଧ୍ୟ ସେମାନେ ସାମାନ୍ୟ ବେତନ ପାଉଥିଲେ । କେବେ ରାଜ-ପରିବାରରେ କୌଣସି

ମହୋତ୍ସବ ହେଉଥିଲ ବା ନୂତନ ରାଜା ଗାଦିନସୀନ ହେଲେ କର୍ମଚାରୀମାନେ ପୁରସ୍କାରସ୍ୱରୂପ ଭୂମି ଓ ଅନ୍ୟାନ୍ୟ ଉପହାର ପାଉଥିଲେ । ଏହିପରି ପ୍ରଥା ପ୍ରଚଳିତ ଥିବାରୁ ଉପଯୁକ୍ତ ଶିକ୍ଷିତ ଲୋକ ଦେଶୀ କର୍ମଚାରୀଙ୍କ ନିଯୁକ୍ତ ହୋଇ ପାରୁ ନ ଥିଲା । ମହାରାଜା ଏତେ ବିଭାଗ ସୃଷ୍ଟି କରି ଉପଯୁକ୍ତ ଶିକ୍ଷିତ ବ୍ୟକ୍ତି ବାଛି କାର୍ଯ୍ୟରେ ମନୋନୀତ କରିବାକୁ ଲାଗିଲେ । ପୁରୁଣା ପ୍ରଥା ଉଠାଇ ଦେଇ ପ୍ରତ୍ୟେକ ବିଭାଗରେ କର୍ମଚାରୀମାନଙ୍କ ବେତନ ବୃଦ୍ଧି କରି ଦିଆଗଲା ଏବଂ ଭଲ କାର୍ଯ୍ୟ ଦେଖାଇ ପାରିଲେ ବେତନ ଉତ୍ତରୋତ୍ତର ବୃଦ୍ଧି କରିବାର ବ୍ୟବସ୍ଥା ହେଲା । ପୂର୍ବେ କୌଣସି କର୍ମଚାରୀ ପେନ୍‌ସନ୍ ପାଇବାର ବ୍ୟବସ୍ଥା ନ ଥିଲା । ୧୮୯୫ ମସିହାରେ ମହାରାଜା ପେନ୍‌ସନ୍ ପ୍ରଥାର ସୃଷ୍ଟି କଲେ । କର୍ମଚାରୀମାନେ କାର୍ଯ୍ୟରୁ ଅବସର ନେବାବେଳେ ମାସିକ ପେନ୍‌ସନ୍ ପାଇବାର ବ୍ୟବସ୍ଥା ହେଲା ।

ଏ ସବୁ ପରିବର୍ତ୍ତନ ଫଳରେ ଉପଯୁକ୍ତ ଶିକ୍ଷିତ ବ୍ୟକ୍ତିମାନେ ମୟୂରଭଞ୍ଜରେ ନିଯୁକ୍ତ ହେବାକୁ ଲାଗିଲେ ।



# ଷଷ୍ଠ ଅଧ୍ୟାୟ



## ପ୍ରଜାରଞ୍ଜନ

ଶାସନସଂସ୍କାର ସଙ୍ଗେ ସଙ୍ଗେ ପ୍ରଜାମାନଙ୍କ ଅବସ୍ଥା ପ୍ରତି ଶ୍ରୀରାମଚନ୍ଦ୍ର ଯଥୋଚିତ ଦୃଷ୍ଟି ଦେଇଥିଲେ । ପୂର୍ବ ପ୍ରଚଳିତ ପ୍ରଥା ଅନୁସାରେ କୌଣସି ପ୍ରଜାର କୌଣସି ଭୂସମ୍ପତ୍ତିରେ ହସ୍ତାନ୍ତରଯୋଗ୍ୟ

ସ୍ୱତ୍ୱ ନ ଥିଲା, ସମସ୍ତେ ଇଚ୍ଛାଧୀନ ପ୍ରଜା ଥିଲେ । ରାଜା ଇଚ୍ଛା କଲେ କୌଣସି ପ୍ରଜାକୁ ବେଦଖଲ କରି ତାହାର ଜମିକୁ ଅନ୍ୟ ପ୍ରଜାକୁ ଦେଇ ପାରୁଥିଲେ । ପ୍ରଜାଙ୍କର ଏ ଅବସ୍ଥା ଦେଖି ମହାରାଜାଙ୍କର ମନ ବିଚଳିତ ହେଲା—ଏ ଅବସ୍ଥାର ପରିବର୍ତ୍ତନ କରିବାକୁ ହେବ। ସେ ୧୮୯୨ ମସିହାରେ ପ୍ରଜାମାନଙ୍କର ନିଜ ନିଜ ଦଖଲି ବୃତ୍ତିରେ ସ୍ଥିତିବାନ୍ ଦଖଲି ସ୍ୱତ୍ୱ ଥିବାର ପ୍ରଚାର କରିଦେଲେ । ଏହି ପ୍ରଜାହିତକର ନିୟମ ପ୍ରଚାରିତ ହେବାରୁ ରାଜ୍ୟରେ ଆନନ୍ଦର ସ୍ରୋତ ଉଠିଲା । ପ୍ରଜାମାନେ ଭଗବାନଙ୍କ ନିକଟରେ ମହାରାଜାଙ୍କର ମଙ୍ଗଳ କାମନା କରିବାକୁ ଲାଗିଲେ । ଘରେ ଘରେ ଏହି ଆନନ୍ଦବାଣୀ ପ୍ରଚାରିତ ହୋଇଗଲା । ଏଣିକି ପ୍ରଜାର ଜମି ତାହାର ନିଜସ୍ୱ ହେଲା, ଆବଶ୍ୟକ ମନେ କଲେ ସେ ବିକ୍ରି, ବନ୍ଧକ ଦେଇ ପାରିବ, ବୃତ୍ତି ଦଖଲ କରି ଉପସ୍ୱତ୍ୱ ଭୋଗ କରି ପାରିବ । ରାଜା କେବଳ ରାଜସ୍ୱ ନେବେ, ତାହା ଛଡ଼ା ଜମି ଉପରେ ତାଙ୍କର ଅନ୍ୟ ଅଧିକାର ନାହିଁ । ମହାଜନୀ ଦେଣା ବା ବାକି ରାଜସ୍ୱ ସକାଶେ କୌଣସି ପ୍ରଜାର ଜମି ନିଲାମ ହୋଇଗଲେ ସୁଦ୍ଧା ତାହାର ଘରବାଡ଼ି ବୃତ୍ତି କୌଣସି ଦେଣାରେ ନିଲାମ ହୋଇ ପାରିବ ନାହିଁ ବୋଲି ହୁକୁମ୍ ପ୍ରଚାର ହେଲା । ଏହାର ଫଳରେ ଦେଣାଗ୍ରସ୍ତ ପ୍ରଜାର ଚାଷଜମି ହସ୍ତାନ୍ତର ହୋଇଗଲେ ସୁଦ୍ଧା ତାହାର ବସବାସ ଘରବାଡ଼ି ରହିବ । ଭବିଷ୍ୟତରେ ସେହି ପ୍ରଜା ଅନ୍ୟ ବୃତ୍ତି ଚାଷ କରି ନିଜ ଅବସ୍ଥାର ଉନ୍ନତି କରି ପାରିବ ।

ପୂର୍ବରୁ ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜ ଦେଓଙ୍କ ସମୟରେ ମୟୂରଭଞ୍ଜର କେବଳ ଭଉଁରିଆ ବନ୍ଦୋବସ୍ତ କରାଯାଇଥିଲା । ପଦକା ମାପ କରାଯାଇ ଜମିର ଜମା ଓ କ୍ଷେତ୍ରଫଳ ଖସଡ଼ାରେ ଲିଖିତ ହେଉଥିଲା । ମାତ୍ର ଏହି ଭଉଁରିଆ ବନ୍ଦୋବସ୍ତ ଦ୍ୱାରା ଜମିର ସୀମା ସରହଦ୍ ଠିକ୍‌ ରୂପେ ଧାର୍ଯ୍ୟ ହୋଇ ପାରି ନ ଥିଲା । ପ୍ରଜାମାନଙ୍କ ମଧ୍ୟରେ ଚୌହଦୀ

ନେଇ ଭବିଷ୍ୟତରେ ବିବାଦ ହୋଇ ପାରେ, ଏହି ଅଶଙ୍କା କରି ମହାରାଜା ଶ୍ରୀରାମଚନ୍ଦ୍ର ଆଧୁନିକ ଧରଣର ସର୍ଭେ ବନ୍ଦୋବସ୍ତ କରାଇଲେ। ପ୍ରତ୍ୟେକ ମୌଜାର ସୀମା ସରହଦ୍ ଠିକ୍ ହୋଇ ନକ୍ସା ଓ ନର୍ଭିଲ ଖତିଆନ ପ୍ରସ୍ତୁତ ହେଲା।

ପୂର୍ବେ ଜମି ଉପରେ କର ଧାର୍ଯ୍ୟ କରିବାର କୌଣସି ନିୟମିତ ପ୍ରଥା ନ ଥିଲା। ଅସ୍ଥାୟୀ କର୍ମଚାରୀଙ୍କ ଉପରେ ସମସ୍ତ ଭାର ନ୍ୟସ୍ତ ହେଉଥିଲା। ଅନେକସ୍ଥଳରେ ଜମିର କର ବ୍ୟତୀତ ଅନ୍ୟ କେତେ ପ୍ରକାର ଦେୟ ପ୍ରଜାକୁ ଦେବାକୁ ପଡ଼ୁଥିଲା। ପ୍ରଜାମାନଙ୍କର ଏ ଦୁରବସ୍ଥା ଦେଖି ମହାରାଜା ଶ୍ରୀରାମଚନ୍ଦ୍ର ଜମିର ଶ୍ରେଣୀବିଭାଗ କରି ବାର୍ଷିକ ଜମା ଧାର୍ଯ୍ୟ କରାଇଥିଲେ; ଜମିର ଉତ୍ପନ୍ନ ଦ୍ରବ୍ୟ ଅନୁସାରେ ଏହି ଜମା ବେଶି ହୋଇ ନ ଥିଲା। ଜମିର କର ବ୍ୟତୀତ ପ୍ରଜାଠାରୁ ଅନ୍ୟ କୌଣସି ପ୍ରକାର ଅଧିକା ଅଦାୟ ହୋଇ ପାରିବ ନାହିଁ ବୋଲି ଆଦେଶ ପ୍ରଚାର ହେଲା। ଅନାବାଦୀ ଜଙ୍ଗଲ ଜମି ସବୁ ଅଳ୍ପ ଜମାରେ ପ୍ରଜାମାନଙ୍କୁ ଲଗାଇ ଦିଆଗଲା। ଯେଉଁ ସବୁ ଗ୍ରାମରେ କୃଷିର ଉନ୍ନତି ସକାଶେ ଗ୍ରୀଷ୍ମକାଳରେ ଜଳ ଆବଶ୍ୟକ, ସେହି ସବୁ ସ୍ଥାନରେ ନାଳ, କେନାଲ୍ ଓ ପୁଷ୍କରିଣୀମାନ ଖୋଳାଇ ଦିଆଗଲା। ଏହି ସବୁ ସୁବିଧା ଓ ସୁଯୋଗ ହେତୁ କୃଷି ଜମିର ପରିମାଣ ବର୍ଷକୁ ବର୍ଷ ବଢ଼ିବାକୁ ଲାଗିଲା। ପ୍ରଜାମାନେ ଜମିରୁ ଅଧିକ ଶସ୍ୟ ଉତ୍ପନ୍ନ କରି ସୁଖରେ ବାସ କଲେ। କ୍ରମେ ଜମିର କରରୁ ରାଜକୋଷରେ ପ୍ରଚୁର ଅର୍ଥ ଜମା ହେବାକୁ ଲାଗିଲା। ମହାରାଜ ଶ୍ରୀରାମଚନ୍ଦ୍ର ରାଜଗାଦିରେ ବସିବା ସମୟରେ ଜମିର କରରୁ ଯେତେ ଆମଦାନୀ ହେଉଥିଲା, ତାଙ୍କର କୋଡ଼ିଏ ବର୍ଷ ରାଜତ୍ୱ ପରେ ତାହା ଚତୁର୍ଗୁଣ ହୋଇଥିଲା।

ଏହି ସବୁ ସୁବିଧା ଦ୍ୱାରା ପ୍ରଜା ସାଧାରଣଙ୍କର ଉପକାର ହେଲା, ସନ୍ଦେହ ନାହିଁ। କିନ୍ତୁ ମହାରାଜା ଦେଖି ପାରିଲେ, ତାଙ୍କର ଅଧିକାଂଶ

ପ୍ରଜା ଗରିବ, ମହାଜନମାନଙ୍କଠାରେ ଋଣଗ୍ରସ୍ତ । ଥରେ ଯେଉଁମାନେ ମହାଜନଙ୍କ କବଳରେ ପଡ଼ିଅଛନ୍ତି, ଦେଣା ପରିଶୋଧ କରିବା ସେମାନଙ୍କ ପକ୍ଷରେ ଅସମ୍ଭବ । ଟଙ୍କାକେ ବର୍ଷକୁ ଛଅଣା ସୁଧ । ବର୍ଷକୁ ବର୍ଷ ଦେଇ ନ ପାରିଲେ ଚକ୍ରବୃଦ୍ଧି ସୁଧ ହିସାବ ହୁଏ । ଧାନ କରଜର ଅବସ୍ଥା ଆହୁରି ଶୋଚନୀୟ । ଦୁଇ ଚାରି ମାସରେ ଗୌଣିକେ ଛ ବଣ୍ଟା, ଦେଇ ନ ପାରିଲେ ଚକ୍ରବୃଦ୍ଧି । କୃଷି ସମ୍ବନ୍ଧରେ ଯେତେ ସୁବିଧା କରି-ଦେଲେ ସୁଦ୍ଧା ପ୍ରଜାମାନଙ୍କର ମହାଜନମାନଙ୍କ କବଳରୁ ନିସ୍ତାର ପାଇବାର ଉପାୟ ନାହିଁ । ପ୍ରଜାମାନେ କ୍ରମେ ଦରିଦ୍ର ହୋଇ ଭୂମିଶୂନ୍ୟ ହେଉଅଛନ୍ତି । ଏ ଅବସ୍ଥାରେ ପ୍ରଜାଙ୍କୁ ଉଦ୍ଧାର କରିବାକୁ ହେବ ଭାବି ମହାରାଜା 'ଦାମଦୋପଟ'—ପ୍ରଥା ରାଜ୍ୟରେ ଚଳାଇବାର ସ୍ଥିର କରି ହୁକୁମ୍ ପ୍ରଚାର କରିଦେଲେ—ମହାଜନ କୌଣସି ସମୟରେ ମୂଳଧନରୁ ଅଧିକ ସୁଧ ଦାବି କରି ପାରିବ ନାହିଁ, ଅର୍ଥାତ୍ ଯେତେ ଟଙ୍କା କରଜ ଦେଇଥିବ, ସୁଧ ତହିଁରୁ ଅଧିକ ହେବ ନାହିଁ । ଏ ହୁକୁମ ପ୍ରଚାର ହେବା ପରେ ମହାଜନ ମହଲରେ ଆତଙ୍କ ଉପସ୍ଥିତ ହେଲା । ସେମାନେ ଆଉ କରଜ ଦେବା ବନ୍ଦ କରିଦେଲେ ।

ମହାରାଜା ଛାଡ଼ିବାର ପାତ୍ର ନୁହନ୍ତି, ପ୍ରଜାମାନଙ୍କ ସୁବିଧା । ନିମିତ୍ତ ରାଜ୍ୟର ସ୍ଥାନେ ସ୍ଥାନେ ଧାନର ଅମାର କରି ପ୍ରଚୁର ଧାନ ଜମା ରଖିଲେ । କାହାରି ଦରକାର ହେଲେ, ଅତି ଅଳ୍ପ ସୁଧରେ ଅମାରରୁ ଧାନ କରଜ ନେଇ ପାରୁଥିଲେ । ଅର୍ଥାଭାବରୁ କେହି ପ୍ରଜା ବଳଦ ଓ ମଞ୍ଜି ଖରିଦ କରି ନ ପାରିବାର ଜଣାଇଲେ, ରାଜକୋଷରୁ ଅତି ଅଳ୍ପ ସୁଧରେ ତାକୁ ଆବଶ୍ୟକ ଅର୍ଥ ଦିଆଯାଉଥିଲା । ଏପରି ଭାବରେ ପ୍ରଜାର ସର୍ବବିଧ ଉନ୍ନତିର ପଥ ପରିଷ୍କାର ହୋଇଥିଲା ।

ଯେଉଁ ସମୟରେ ଓଡ଼ିଶାର ମୋଗଲବନ୍ଦୀରେ ମଧ୍ୟ ସହଯୋଗ-ସମିତି ନାମ ପର୍ଯ୍ୟନ୍ତ କେହି ଶୁଣି ନ ଥିଲେ, ସେତେବେଳେ ମହାରାଜା

ନିଜ ରାଜ୍ୟରେ ପ୍ରଜାର ଏହି ମଙ୍ଗଳକର ଅନୁଷ୍ଠାନ ଚଳାଇବାକୁ ଯଥେଷ୍ଟ ଚେଷ୍ଟାର ତ୍ରୁଟି କରି ନ ଥିଲେ । ଉପଯୁକ୍ତ ମୂଳଧନ ଅଭାବରୁ କେବଳ ଦଶଟି ବ୍ୟତୀତ ଅନ୍ୟ ସବୁ ସହଯୋଗ-ସମିତି ବିଫଳ ହୋଇଥିଲା ।

ଚାଷୀମାନେ ବାପ ବଡବାପ ଅମଳରୁ ଯେଉଁପରି ଚାଷ ଅବାଦ ଓ ଯେଉଁ ଫସଲ ଅମଦାନୀ କରୁଥିଲେ, ତାହା ଛଡ଼ା ଅନ୍ୟ ମୂଲ୍ୟବାନ୍ ଫସଲ କରିବାକୁ ରାଜି ନୁହନ୍ତି । ଚିନା ବାଦାମ୍, କୋବି, ବିଲାତି ଅଳୁ ପ୍ରଭୃତି ଶାକସବଜି ପ୍ରଜାମାନେ ନିଜ ଇଚ୍ଛାରେ କରିବାର ପାଦ ନୁହନ୍ତି ! ଏ ସବୁ ଫସଲ ଅମଦାନୀ ହେଲେ ପ୍ରଜା ବହୁତ ଆୟ କରି ପାରିବ । ଏହି ଉଦ୍ଦେଶ୍ୟରେ ମଞ୍ଜି ଅଣାଇ ଏହିସବୁ ଫସଲ ସ୍ଥାନେ ସ୍ଥାନେ କରି ଦେଖାଇ ଦିଆଗଲା । ପର ବର୍ଷକୁ ପ୍ରଜାମାନେ ସେହିପରି ଚାଷକରି ଲାଭବାନ୍ ହେଲେ । ରବର ଗଛର ଚାଷ କରିବାପାଇଁ କଲିକତାର ସର୍ ଡାନିଏଲ୍ ହାମିଲ୍‌ଟନ୍ ସାହେବଙ୍କୁ କେତେକ ଜମି ପଟ୍ଟାଦେବାଦ୍ୱାରା ଦେଶରେ ରବର ଉତ୍ପନ୍ନ ହେଲା । ଅନ୍ୟାନ୍ୟ ଦେଶରୁ କପାମଞ୍ଜି ଅଣାଇ କପାଚାଷ ମଧ୍ୟ କରାଯାଇଥିଲା ।

ମୟୂରଭଞ୍ଜର ପ୍ରଧାନ ଶିଳ୍ପ ଥିଲା ମଠାଲୁଗା ବୁଣା । ସୁନ୍ଦର ମଠାର ଥାନ, ଲୁଗା, ଶାଢ଼ୀ ପ୍ରଭୃତି ତିଆରି ହୋଇ ଦେଶ ବିଦେଶରେ ବହୁଳ ବିକ୍ରି ହେଉଥିଲା । ବନ ଜଙ୍ଗଲରେ ଟସର ପୋକଦ୍ୱାରା ଟସର ଅମଦାନୀ ହେଉଥିଲା । ଏହି ଟସରରୁ ଦେଶୀ ତନ୍ତମାନେ ମଠା ବୁଣନ୍ତି । ଏହି ଶିଳ୍ପର ଉନ୍ନତିକଳ୍ପେ ମହାରାଜା ଆଧୁନିକ ଧରଣର ତନ୍ତମାନ ଅଣାଇ ମଠା ବୁଣାଇବାର ସୁବିଧା କରି ଦେଇଥିଲେ । ନୂଆ ନୂଆ ଉତ୍କୃଷ୍ଟ ରଙ୍ଗ ଅଣାଇ ଟସର ରଙ୍ଗାଇବାର ବ୍ୟବସ୍ଥା ମଧ୍ୟ ହୋଇଥିଲା । ଏହାର ଫଳରେ ସେହି ତନ୍ତମାନେ ନାନା ରଙ୍ଗର ଉତ୍କୃଷ୍ଟ ମଠା ତିଆରି କଲେ ଓ ତାହା ପୂର୍ବ ଅପେକ୍ଷା ଅଧିକ ମୂଲ୍ୟରେ ବିକ୍ରି ହେଲା । ତନ୍ତମାନଙ୍କୁ ମୂଳଧନ

ଯୋଗାଇବା ପାଇଁ ଅଳ୍ପ ସୁଧରେ ସେମାନଙ୍କୁ ଟଙ୍କା ଧାର ଦେଉଥିଲେ । ଏହାଦ୍ୱାରା ସେମାନେ ଚତୁର୍ଗୁଣ ଉତ୍ସାହରେ କାର୍ଯ୍ୟ କରି ଲାଭବାନ ହେଲେ । ୧୯୦୬ ମସିହାର କଲିକତାର ପ୍ରଦର୍ଶନୀରେ ଏବଂ ୧୯୧୦ ମସିହାର ଯାଜପୁର ପ୍ରଦର୍ଶନୀରେ ଏହି ସବୁ ମଟା ପ୍ରଶଂସିତ ହୋଇଥିଲା ଓ କାରିଗରମାନେ ପୁରସ୍କୃତ ହୋଇଥିଲେ ।

ଦେଶରେ ରେଶମ ଆମଦାନୀ କରିବାକୁ ମନସ୍ଥ କରି ମହାରାଜା ବିଶେଷଜ୍ଞ ଅଣାଇ ରେଶମ ପୋକ ରହିବାର ଗଛ ଦେଶରେ ଲଗାଇ-ଥିଲେ । ଦୁର୍ଭାଗ୍ୟବଶତଃ ସେ କାର୍ଯ୍ୟରେ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ରାଜ୍ୟର ବଢ଼େଇ କମାରମାନଙ୍କୁ ଶିକ୍ଷିତ କରାଇ ସେମାନଙ୍କ-ଦ୍ୱାରା ଆଧୁନିକ ଧରଣର ସରଞ୍ଜାମ ନିର୍ମାଣ କରିବାର ମନସ୍ଥ କରି ବାରିପଦାଠାରେ ଗୋଟିଏ ସ୍କୁଲ ବସାଇଥିଲେ । କାରିଗରମାନେ ଏହି ସ୍କୁଲର ଶିକ୍ଷକଙ୍କଠାରୁ ଉତ୍କୃଷ୍ଟ ଧରଣର କାଠକାମ କରିବାକୁ ଶିଖୁ-ଥିଲେ । ଅତ୍ୟଧିକ ଖର୍ଚ୍ଚ ପଡ଼ିବାରୁ ଏବଂ ଲୋକେ ଏ ସ୍କୁଲ ପ୍ରତି ଅନାସ୍ଥା ପ୍ରଦର୍ଶନ କରିବାରୁ ଏ ଅନୁଷ୍ଠାନଟି ବନ୍ଦ ହୋଇ ଯାଇଥିଲା ।

ଲାଖ ଆମଦାନୀ କରିବା ନିମିତ୍ତ ମହାରାଜା ବ୍ରାହ୍ମଣଘାଟି ସବ୍-ଡିଭିଜନରେ ଦୁଇଗୋଟି ଲାଖ କାରଖାନାର ପ୍ରତିଷ୍ଠା କରିଥିଲେ । ବରକୋଳି ଗଛରୁ ଲାଖ-ପୋକଦ୍ୱାରା ଲାଖ ଆମଦାନୀ ହୋଇ କାରଖାନାରେ ବିଶୁଦ୍ଧ ଲାଖ ପ୍ରସ୍ତୁତ ହେବାକୁ ଲାଗିଲା । ଏହି ଶିଳ୍ପଦ୍ୱାରା ଦେଶର ଅନେକ ଲୋକ କାମ ପାଇଲେ ଏବଂ ଅନେକ ଅନୁର୍ବର ଜମିରୁ ବହୁତ ଲାଖ ଆମଦାନୀ ହେଲା

ଲୋକଙ୍କର କେବଳ ଆର୍ଥିକ ଉନ୍ନତି କରିଦେଲେ ଯେ ପ୍ରକୃତରେ ଦେଶ ଉନ୍ନତ ହୋଇଗଲା, ମହାରାଜା ଶ୍ରୀରାମଚନ୍ଦ୍ର ଏହା ଭାବି

ନ ଥିଲେ । ବୈଷୟିକ ଉନ୍ନତି ସଙ୍ଗେ ମାନସିକ ଉନ୍ନତି ସର୍ବାଦୌ ଅବଶ୍ୟକ । ଲୋକେ ଶିକ୍ଷିତ ନ ହେଲେ ଏହି ସବୁ ବୈଷୟିକ ଉନ୍ନତିର ସୁବିଧା ସୁଯୋଗ ଉପଭୋଗ କରିବାକୁ କଦାପି କ୍ଷମ ହେବେ ନାହିଁ ।

୧୮୯୨ ମସିହାରେ ବାରିପଦା ମାଇନର ସ୍କୁଲକୁ ସେ ଉଚ୍ଚ-ଇଂରାଜୀ ସ୍କୁଲରେ ପରିଣତ କରିଥିଲେ । ସେ ସମୟରେ ଛାତ୍ରମାନଙ୍କ-ଠାରୁ କୌଣସି ପ୍ରକାର ଦରମା ଅଦାୟ ହେଉ ନ ଥିଲା । ସ୍କୁଲର ତାବତୀୟ ବ୍ୟୟ ଷ୍ଟେଟକୁ ବହନ କରିବାକୁ ପଡ଼ୁଥିଲା । ଗରିବ ଛାତ୍ରମାନଙ୍କୁ ପାଠ୍ୟ ପୁସ୍ତକ ପର୍ଯ୍ୟନ୍ତ ବିନା ପଇସାରେ ଦିଆ ଯାଉଥିଲା । ମହାରାଜା ଅନ୍ତେ ଅନ୍ତେ ରାଜ୍ୟର ଶିକ୍ଷୋନ୍ନତିର ପନ୍ଥା ନିରୂପଣ କରିଥିଲେ । ମହାରାଜା କୃଷ୍ଣଚନ୍ଦ୍ରଙ୍କ ମୃତ୍ୟୁସମୟରେ ସମୁଦାୟ ମୟୂରଭଞ୍ଜରେ ସ୍କୁଲ ସଂଖ୍ୟା ଥିଲା ୪୪ । ଶ୍ରୀରାମଚନ୍ଦ୍ର ବର୍ଷକୁ ବର୍ଷ ଏହି ସ୍କୁଲ ସଂଖ୍ୟା ବୃଦ୍ଧି କରିବାକୁ ଲାଗିଲେ । ୧୯୧୦ ମସିହାରେ ଏହି ବିଦ୍ୟାଳୟର ସଂଖ୍ୟା ୪୩୧ ହୋଇଥିଲା । ପ୍ରତ୍ୟେକ ସ୍କୁଲର ଘର ନୂତନ ତିଆରି ହୋଇଥିଲା ଏବଂ ପୁରୁଣା ଧରଣର ଅବଧାନମାନଙ୍କ ପରିବର୍ତ୍ତିରେ ନୂତନ ଧରଣର ଶିକ୍ଷିତ ଶିକ୍ଷକମାନେ ନିଯୁକ୍ତ ହୋଇଥିଲେ । ତାଙ୍କ ପିତାଙ୍କ ଅମଳରେ ଷ୍ଟେଟର ମୋଟ ଛାତ୍ରସଂଖ୍ୟା ୨୩୭୬ ଥିଲା ଏବଂ ତାଙ୍କ ସମୟରେ ଛାତ୍ରସଂଖ୍ୟାର ବୃଦ୍ଧି ହୋଇ ୭୮୯୧ ହୋଇଥିଲା । ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ରାଜ୍ୟରେ ପ୍ରଚଳନ କରାଇବା ତାଙ୍କର ଆନ୍ତରିକ ଇଚ୍ଛା ଥିଲା; ମାତ୍ର ନାନା କାରଣରୁ ସେ ତାହା କାର୍ଯ୍ୟରେ ପରିଣତ କରି ପାରି ନ ଥିଲେ ।

ମହାରାଜାଙ୍କ ପୂର୍ବରୁ ରାଜ୍ୟରେ ଆଦୌ ସ୍ୱାସ୍ଥ୍ୟ ବିଭାଗ ନ ଥିଲା । ବାରିପଦା ସହରରେ ଖଣ୍ଡେ ଭଙ୍ଗା ଘରେ ଗୋଟିଏ ନାମମାତ୍ର

ଡାକ୍ତରଖାନା ଥିଲା । ଜଣେ କମ୍ପାଉଣ୍ଡର ଓ ଜଣେ ନେଟିଭ ଡାକ୍ତର ରହିଥିଲେ । ମଫସଲ କଥା ପଚାରେ କିଏ ? ସହରର ସ୍ୱାସ୍ଥ୍ୟ ପ୍ରତି ଆଦୌ ଦୃଷ୍ଟି ଦିଆଯାଉ ନ ଥିଲା । ରାସ୍ତା ସବୁ ବଡ଼ ଅପରିଷ୍କାର ଅବସ୍ଥାରେ ପଡ଼ି ରହିଥିଲା । ଏପରି ଅବସ୍ଥା ଦେଖି ମହାରାଜା ଶ୍ରୀରାମଚନ୍ଦ୍ର ବ୍ୟଥିତ ହୋଇଥିଲେ ଏବଂ ଯଥାସାଧ୍ୟ ଚେଷ୍ଟା କରି ରାଜ୍ୟରେ ଆଠଟି ଡାକ୍ତରଖାନା ସ୍ଥାପନ କରିଥିଲେ । ପ୍ରତ୍ୟେକ ଡାକ୍ତରଖାନା ନିମନ୍ତେ ଗୃହ ଓ ଉପଯୁକ୍ତ ଉପକରଣର ଯୋଗାଡ଼ ହୋଇଥିଲା । ବର୍ଷରେ ହଜାର ହଜାର ରୋଗୀ ଚିକିତ୍ସିତ ହୋଇ ସୁଫଳ ଲାଭ କରିଥିଲେ । ୧୯୧୦ ମସିହାରେ କେବଳ ସ୍ୱାସ୍ଥ୍ୟ-ବିଭାଗରେ ୧୨୦୩୨ ଟଙ୍କା ବ୍ୟୟିତ ହୋଇଥିଲା ।

ବସନ୍ତରୋଗ ମୟୂରଭଞ୍ଜରେ ବଡ଼ ପ୍ରବଳ ଆକାର ଧାରଣ କରୁଥିଲା । ଅନେକ ଲୋକ ଏହି ରୋଗରେ ମୃତ୍ୟୁମୁଖରେ ପଡ଼ୁଥିଲେ । ଟୀକା ଦେବାର ପ୍ରଥା ବାଧ୍ୟତାମୂଳକ ହୋଇଥିଲା । ସେହିଦିନଠାରୁ ବସନ୍ତର ପ୍ରାବଲ୍ୟ ଅନେକ କମି ଆସିଥିଲା ।

୧୯୦୫ ମସିହାରେ ବାରିପଦା ସହରରେ ସେ ମ୍ୟୁନିସିପାଲିଟି ପ୍ରତିଷ୍ଠା କରିଥିଲେ । ତହିଁରେ ୧୫ ଜଣ କମିଶନର ନିଯୁକ୍ତ ହୋଇଥିଲେ । ସେମାନଙ୍କ ମଧ୍ୟରୁ ୯ ଜଣ ଷ୍ଟେଟ କର୍ମଚାରୀ ଓ ୬ ଜଣ ଅବୈତନିକ ଭଦ୍ରବ୍ୟକ୍ତି । ଏମାନଙ୍କ ମଧ୍ୟରୁ ଜଣେ ଚେୟାରମ୍ୟାନ୍ ମଧ୍ୟ ନିଯୁକ୍ତ ହୋଇଥିଲେ । ସହରର ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ଦେବାର ଭାର ଏମାନଙ୍କ ଉପରେ ନ୍ୟସ୍ତ ଥିଲା । ରାସ୍ତା ପରିଷ୍କାର ରଖିବା ଓ ମରାମତି କରିବା, ସହରରେ ଆଲୁଅ ବନ୍ଦୋବସ୍ତ କରିବା ଇତ୍ୟାଦି ଲୋକହିତକର କାର୍ଯ୍ୟ ସବୁ ମ୍ୟୁନିସିପାଲିଟିର ତତ୍ତ୍ୱାବଧାନରେ ରଖାଗଲା । ମ୍ୟୁନିସିପାଲିଟି ଟିକସ୍ ବାଦ ଯାହା ଅଧିକା ଖର୍ଚ୍ଚ ହେଉଥିଲା, ସେ ସମସ୍ତ ରାଜକୋଷରୁ ଦିଆ ହେଉଥିଲା ।

ପୂର୍ବେ ସହରର ଜନସପନ୍, ପନ ପରିବା ଆଦି ଖାଦ୍ୟ ପଦାର୍ଥ ବାରିପଦାର ରାସ୍ତାର ଦୁଇ ଧାରରେ ବିକି ହେଉଥିଲା । ପୁରୁଣା ଜେଲଖାନା ଗୃହଟି ମରାମତି କରାଯାଇ ବଜାରରେ ପରିଣତ ହେଲା । ସମସ୍ତ ଜନସ-ପନ ଏହିଠାରେ ବିକି ହେବାର ବନ୍ଦୋବସ୍ତ କରାଗଲା । ଅସ୍ୱାସ୍ଥ୍ୟକର କୌଣସି ଖାଦ୍ୟ ପଦାର୍ଥର ବିକ୍ରି ହୋଇ ନ ପାରିବା ମର୍ମରେ ହୁକୁମ ପ୍ରଚାରିତ ହେଲା ଏବଂ ମ୍ୟୁନିସିପାଲିଟି ତରଫରୁ ପ୍ରତିଦିନ ଏସବୁ ଜିନିଷ ପରୀକ୍ଷା କରି ଦେଖିବାର ମଧ୍ୟ ବନ୍ଦୋବସ୍ତ ହୋଇଥିଲା । ଏହିପରି ବାରିପଦା ଅଳ୍ପଦିନ ମଧ୍ୟରେ ଓଡ଼ିଶାର ଗୋଟିଏ ସୁନ୍ଦର ସ୍ୱାସ୍ଥ୍ୟକର ସହର ରୂପରେ ପରିଣତ ହୋଇଗଲା ।



# ସପ୍ତମ ଅଧ୍ୟାୟ



## ଉତ୍କଳ-ସମ୍ମିଳନୀ

ଶିକ୍ଷା ଦୀକ୍ଷାରେ ଓ ରାଜନୀତିକ୍ଷେତ୍ରରେ ଆଜିକାଲି ଯେପରି; ଆଜକୁ ୨୩ ବର୍ଷ ତଳେ ମଧ୍ୟ ସେହିପରି ଉତ୍କଳ ଭାରତର ଅନ୍ୟାନ୍ୟ ପ୍ରଦେଶ-ଠାରୁ ପଛରେ ପଡ଼ି ରହିଥିଲା । ଭାରତର ବିଭିନ୍ନ ପ୍ରଦେଶରେ ନାନା-ପ୍ରକାର ସମବେତ ଚେଷ୍ଟା, ସଭା ସମିତିମାନ ସ୍ଥାପିତ ହୋଇ ଦେଶର ତଥା ସମାଜର ଉପକାର ନିମନ୍ତେ ଚେଷ୍ଟା କରି ଆସୁଥିଲେ । ଭାରତର ପୂର୍ବ ଗୌରବ ଓ ବିଦ୍ୟାଚର୍ଚ୍ଚା ନେଇ ଅନେକ ସ୍ଥାନରେ ଅନେକ ଆନ୍ଦୋଳନ ହେଉଥିଲା । ସର୍ବୋପରି ମହାଭାରତ ଜାତୀୟ ମହାସମ୍ମିଳନୀ ସେତେବେଳକୁ ଭାରତବାସୀର ମନ ଆନ୍ଦୋଳିତ କରି ପାରିଥିଲା । ମାତ୍ର

କାହିଁରେ ଓଡ଼ିଶାର ନାମ ନ ଥିଲା । ଉତ୍କଳର ତଥା କଥିତ ନେତା ବା ଅଗ୍ରଣୀ ବ୍ୟକ୍ତିମାନେ ଯେ ଯାହାର ଧନ ଦୌଲତ, ବିଷୟ ବିଳାସରେ ଉନ୍ମତ୍ତ ଥିଲେ । କେତେବେଳେ କାହାର କାହାର ପ୍ରାଣରେ ମିଳନର ତୃଷା ଯେ ବାଜି ଉଠୁ ନ ଥିଲା, ଏପରି ନୁହେ କିନ୍ତୁ ସେ ଦିଗରେ କୌଣସି ଦଳଗତ ଉଦ୍ୟମର ଚେଷ୍ଟା କରିବାକୁ କେହି ସାହସୀ ହୋଇ ନ ଥିଲେ ।

ଜାତୀୟଭାବର ଉଦ୍ରେକ କରିବାପାଇଁ ଉତ୍କଳ ଇତିହାସରେ ଯେ ମାଲ ମସଲା ନ ଥିଲା, ଏହା ନୁହେ । ବରଂ ଭାରତର ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ଉତ୍କଳ ପୂର୍ବ ଗୌରବରେ ମହୀୟାନ୍, କିନ୍ତୁ ଉତ୍କଳ ପ୍ରଦେଶ ଦୈବଦୁର୍ବିପାକରୁ ବିକଳାଙ୍ଗ, ଓଡ଼ିଆଭାଷୀ ସ୍ଥାନମାନ ବିଭିନ୍ନ ପ୍ରଦେଶରେ ଖଣ୍ଡ ଖଣ୍ଡ ହୋଇ ରହିଥିବାରୁ ସବୁଠାରେ ଓଡ଼ିଆ ଉପେକ୍ଷିତ ଓ ପଦଦଳିତ । ଓଡ଼ିଆର ଜାତୀୟ ଜୀବନ କ୍ଷୀଣ, ଓଡ଼ିଶାର ବାହାରେ ଓଡ଼ିଆ 'କୁଲି' ବୋଲି ପରିଚିତ ।

ଓଡ଼ିଆର ଏ ହୀନତ୍ୱ ବଦଳାଇବାକୁ ହେବ । ଓଡ଼ିଆ ପ୍ରାଣରେ ପୂର୍ବ ଗୌରବର, ଶିଳ୍ପର ଓ ବୀରତ୍ୱର ଭାବ ଉଦ୍ରେକ କରାଇବାକୁ ହେବ । ଭାରତରେ ଦେଖାଇବା ଦରକାର—ଓଡ଼ିଆ ଗୋଟିଏ ବଡ଼ ଜାତି । ସରକାରଙ୍କୁ ଦେଖାଇବାକୁ ହେବ—ଓଡ଼ିଆ ଜାତିକୁ ଖଣ୍ଡ ବିଖଣ୍ଡ କରି ବିଭିନ୍ନ ଶାସନାଧୀନରେ ରଖିଲେ ସୁଦ୍ଧା ଓଡ଼ିଆର ପ୍ରାଣ ଏକ । ମୁସଲମାନ ରାଜତ୍ୱରେ କେବଳ ଏହି ଜାତି ଗଜପତି ନରପତି-ମାନଙ୍କ ଅଧୀନରେ ବହୁକାଳ ନିଜର ସ୍ୱାଧୀନତା ରକ୍ଷା କରିବାକୁ ସମର୍ଥ ହୋଇଥିଲା । ଏହି ଜାତିର କୀର୍ତ୍ତି ଆଜି ସୁଦ୍ଧା କୋଣାର୍କ, ପୁରୀ, ଭୁବନେଶ୍ୱର ଓ ବାରବାଟୀରେ ରହିଅଛି । ଏହି ଜାତି ଧନେ ଜାଣ ଓ

ବାଲିଦ୍ୱୀପକୁ ଯାଇ ବାଣିଜ୍ୟ ବିସ୍ତାର କରି ପାରିଥିଲେ । ଧର୍ମର ଉଦାରତା ଏ ଦେଶ ଯେପରି ଦେଖାଇ ପାରିଅଛି, ଭାରତର ଅନ୍ୟ କୌଣସିଠାରେ ସେପରି ଦେଖାଯାଇ ନାହିଁ । ପୁରୀର ମହାପ୍ରସାଦ ସବୁ ଜାତି, ସବୁ ସମ୍ପ୍ରଦାୟଙ୍କ ନିକଟରେ ସମାନ ଆଦରଣୀୟ । ପୁରୀ ମନ୍ଦିରର ପରିକଳ୍ପନା ଏହି ଓଡ଼ିଆ ମସ୍ତିଷ୍କରୁ ଉଦ୍ଭୂତ । କେତେ ଯୁଗ ବିତି ଗଲାଣି, ତଥାପି ପୁରୀ ମନ୍ଦିରରେ ସେହି ଭୋଗ ଧୂପ ଆଦି ସେହିପରି ଭାବରେ ଚାଲି ଆସୁଅଛି । ସାହିତ୍ୟ କ୍ଷେତ୍ରରେ ମଧ୍ୟ ଓଡ଼ିଆ ସାହିତ୍ୟ ପୂର୍ବକାଳରେ ଭାରତବର୍ଷରେ ଶୀର୍ଷ ସ୍ଥାନ ଅଧିକାର କରିଅଛି ।

ଓଡ଼ିଆର ଏ ଗୌରବକୁ ବୁଝାଇବାକୁ ହେଲେ ଓଡ଼ିଆମାନଙ୍କୁ ଏକତ୍ର କରିବା ଆବଶ୍ୟକ । ଓଡ଼ିଶାର ବରପୁତ୍ର, ଓଡ଼ିଆପ୍ରାଣରେ ସର୍ବାଦୌ ମିଳନଭାବ ପ୍ରବର୍ତ୍ତକ ଶ୍ରୀଯୁକ୍ତ ମଧୁସୂଦନ ଦାସ ମହୋଦୟ ଏହି ଭାବରେ ପ୍ରଣୋଦିତ ହୋଇ ଗୋଟିଏ କାର୍ଯ୍ୟ ମିଳନର ସୃଷ୍ଟି କରିବାକୁ ଯତ୍ନ କଲେ । ଏ କାର୍ଯ୍ୟ ମିଳନର ନାମ 'ଉତ୍କଳ ସମ୍ମିଳନୀ' ଦିଆଗଲା । ସମଗ୍ର ଉତ୍କଳଭାଷୀ ଅଞ୍ଚଳର ମଙ୍ଗଳଜନକ ପ୍ରସ୍ତାବମାନ ପ୍ରସ୍ତାବିତ ହୋଇ କାର୍ଯ୍ୟରେ ପରିଣତ ହେବାର ସ୍ଥିର ହେଲା । ସମ୍ବଲପୁର, ଛୋଟନାଗପୁର, ମେଦନୀପୁର, ଗଞ୍ଜାମ ଆଦି ଓଡ଼ିଆଭାଷୀ ସ୍ଥାନମାନ ରାଜନୈତିକ ଓଡ଼ିଶା ସଙ୍ଗେ ଯୋଗ କରାଯିବା ନିମିତ୍ତ ସରକାରଙ୍କୁ ଦୃଢ଼ଭାବରେ ଏହି ସମ୍ମିଳନୀ ଜଣାଇବାର ମଧ୍ୟ ସ୍ଥିର ହେଲା ।

ଏହି ଉଦ୍ଦେଶ୍ୟରେ କଟକ ନଗରୀରେ ୧୯୦୩ ମସିହା ଡିସେମ୍ବର ମାସରେ ଗୋଟିଏ କାର୍ଯ୍ୟନିର୍ବାହିକା ସମିତି ଗଠିତ ହେଲା ଏବଂ ସେହି ମାସ ୩୦।୩୧ ତାରିଖରେ ପ୍ରଥମ ସମ୍ମିଳନୀର ବୈଠକ ହେବାର ମଧ୍ୟ ସ୍ଥିର ହୋଇଥିଲା । ସେହି ସଭାର ପ୍ରଧାନ ପୃଷ୍ଠପୋଷକ ରୂପରେ ମହାରାଜା ଶ୍ରୀରାମଚନ୍ଦ୍ର ଦେବଙ୍କୁ ଆହ୍ୱାନ କରାଗଲା । ଏ ଆହ୍ୱାନ ଜାତିର ତଥା

ମାତୃଭୂମିର ଅହ୍ୱାନ ମନେ କରି ମହାରାଜା ସ୍ୱୀକୃତ ହେଲେ । ତାଙ୍କର ସର୍ବପ୍ରଥମ ମିଳନ ଅନୁଷ୍ଠାନର ସଭାପତି ନିଯୋଗ ବାସ୍ତବିକ ଉପଯୁକ୍ତ ପାତ୍ରରେ ଅର୍ପିତ ହୋଇଥିଲା । କର୍ମତତ୍ପରତାରେ, ଜ୍ଞାନରେ, ମାନରେ ଏବଂ ସର୍ବୋପରି ହୃଦୟବତ୍ତାରେ ତାଙ୍କ ଅପେକ୍ଷା ଅଧିକ ଯୋଗ୍ୟ ଅଉ କିଏ ଏ ସଭା ଅଳଙ୍କୃତ କରିଥାଆନ୍ତେ ?

ଶୁଭକ୍ଷଣରେ ୧୯୦୩ ସାଲ ଡିସେମ୍ବର ମାସ ୩୦ ତାରିଖ ବୁଧବାର ପ୍ରସ୍ତୁତ ହୋଇଥିଲା । ସେ ଦିନ ୧୧ଘଣ୍ଟା ବେଳେ ଉତ୍କଳ-ସମ୍ମିଳନୀ ସଭାର ପ୍ରଥମ ଅଧିବେଶନ ହେଲା । ସଭାମଣ୍ଡପଟି ଅତ୍ୟନ୍ତ ମନୋହର-ରୂପେ ସୁସଜ୍ଜିତ ହୋଇଥିଲା ଏବଂ ଏଡ଼େ ବୃହତ୍ ଥିଲା ଯେ, ପ୍ରାୟ ଦୁଇ ସହସ୍ର ଲୋକ ଅକ୍ଲେଶରେ ତହିଁ ମଧ୍ୟରେ ସ୍ଥାନ ପାଇଥିଲେ । ଆସନର ବନ୍ଦୋବସ୍ତ ଉତ୍ତମ ଥିଲା ଏବଂ ଶାନ୍ତିରକ୍ଷାର କାର୍ଯ୍ୟ ସେବକ ଛାତ୍ରମାନେ ସୌଖୀନ ସୈନ୍ୟଦଳରୂପେ ଅତି ସାବଧାନତା ଓ ମନୋଯୋଗ ସହିତ ନିର୍ବାହ କରିଥିଲେ । ଉତ୍କଳଭୂମି ପ୍ରତ୍ୟେକ ଅଞ୍ଚଳରୁ ପ୍ରତିନିଧିମାନେ ଆସି ସଭାରେ ଯୋଗଦାନ କରିଥିଲେ । ମେଦିନୀପୁରରୁ ୧୦ ଜଣ, ସମ୍ବଲପୁରରୁ ୨୫ ଜଣ ଏବଂ ଗଞ୍ଜାମରୁ ୩୦୦ ଜଣ ପ୍ରତିନିଧି ଯୋଗଦାନ କରିଥିଲେ । ଏପରେ କଟକ, ପୁରୀ, ବାଲେଶ୍ୱର ଓ ଗଡ଼ଜାତମାନଙ୍କରୁ ମଧ୍ୟ ଅନେକ ଆସିଥିଲେ ।

ପ୍ରଥମ ଉତ୍କଳ-ସମ୍ମିଳନୀର ସଭାପତିରୂପେ ମହାରାଜା ଯେଉଁ ସାରଗର୍ଭ ବକ୍ତୃତା ଦେଇଅଛନ୍ତି, ପ୍ରତ୍ୟେକ ଉତ୍କଳୀୟର ତାହା ପ୍ରଣିଧାନ ଯୋଗ୍ୟ । ସେ ଅଭିଭାଷଣ ପଢ଼ିଲେ ସ୍ୱତଃ ମନରେ ଭକ୍ତି ଓ ଦୁଃଖ ଯୁଗପତ୍ ଉଦିତ ହୁଏ । ତାଙ୍କ କର୍ମକୁଶଳତା, ଧର୍ମଭାବ, ବିନୟ ଓ ଜ୍ଞାନର ଗରିମା ଅନୁଭବ କରି ମନ ସ୍ୱତଃ ତାଙ୍କ ପ୍ରତି ଭକ୍ତିଭାବରେ ନଇଁ ପଡ଼େ । ମହାରାଜା ଏତେ ଅଳ୍ପ ବୟସରେ ଇହଲୀଳା ଶେଷ କରି ନ

ଥିଲେ ତାଙ୍କଦ୍ୱାରା ଉତ୍କଳର ଯେ କେତେପ୍ରକାର ଉନ୍ନତି ହୋଇ ପାରିଥାଅନ୍ତା, ଏହା ଭାବିଲେ ମନରେ ଭୟଙ୍କର ଦୁଃଖ ଜାତ ହୁଏ ।

ଧର୍ମଶିକ୍ଷା ଓ ଦେଶର ଉନ୍ନତି ସମ୍ବନ୍ଧରେ ଆମ୍ଭେମାନେ ମହାରାଜାଙ୍କ ନିଜ ମତ ତାଙ୍କ ଅଭିଭାଷଣରୁ ଉଦ୍ଧାର କରୁଅଛୁଁ ; ପାଠକ ତହିଁରୁ ମହାରାଜାଙ୍କ ମନର ଉଦାରତା ବିଷୟ ସ୍ପଷ୍ଟ ବୁଝି ପାରିବେ ।

"ବାସ୍ତବରେ ଧର୍ମ ବିନା ମନୁଷ୍ୟ-ସମାଜ ସ୍ଥାୟୀ ହୋଇ ନ ପାରେ । ବିପତ୍ତି ଓ ପ୍ରଲୋଭନ ସମୟରେ ମନୁଷ୍ୟକୁ କିଏ ସତ୍ସାହସ ଓ ବଳ ପ୍ରଦାନ କରେ ? ଧର୍ମ ତାହା ସମ୍ପନ୍ନ କରେ । ଦୁଃଖିତ ଅଥବା ହତାଶ ହେବାବେଳେ, ଯେତେବେଳେ ମନୁଷ୍ୟ ଆପଣାର ଚତୁଃପାର୍ଶ୍ୱ ଅନ୍ଧକାରମୟ ଦେଖେ, ଯେତେବେଳେ ସଂସାର ତାହାକୁ ଶୂନ୍ୟ ବୋଧ ହୁଏ, ଧର୍ମ ସିନା ତାହାକୁ ଆଶ୍ୱାସ ପ୍ରଦାନ କରେ, ତାପିତ ଅନ୍ତଃକରଣରେ ଶାନ୍ତି, ଆଶା ଓ ସହିଷ୍ଣୁତା ପ୍ରଦାନ କରେ । ଧର୍ମ ସୁନୀତିର ମୂଳ ଅଟେ । ଧର୍ମବିହୀନ ହେଲେ ସୁନୀତି ସତେଜ ହୋଇ ମନୁଷ୍ୟ-ସମାଜକୁ ଚଳାଇ ନ ପାରେ ।

"ଏପରି କେହି କହି ନ ପାରେ ଯେ, ସେ ଯାହା ବିଶ୍ୱାସ କରେ ତାହା ସତ୍ୟ ଓ ସମସ୍ତଙ୍କୁ ସେହି ମତ ବିଶ୍ୱାସ କରିବାକୁ ହେବ । ଧର୍ମର ପ୍ରକୃତ ଲକ୍ଷଣ ସତ୍ୟକଥନ, ଦୟା, ସରଳତା ଇତ୍ୟାଦି । ଅପର ଧର୍ମମାନଙ୍କୁ ନିନ୍ଦା କରିବା ଧର୍ମର ଲକ୍ଷଣ ନୁହେ । ଅତଏବ ଆମ୍ଭ ଧର୍ମ ଶ୍ରେଷ୍ଠ ଓ ଅପର ଧର୍ମ ମିଥ୍ୟା କିମ୍ବା ମନ୍ଦ, ଏପରି ଗର୍ବ କରିବା ଅନୁଚିତ । ପରମେଶ୍ୱର ଆମ୍ଭମାନଙ୍କୁ ଯେଉଁ ବୁଦ୍ଧି ଦେଇଅଛନ୍ତି, ତଦ୍ଦ୍ୱାରା ଆମ୍ଭେମାନେ ଜାଣୁଅଛୁ ଯେ, ପ୍ରଚଳିତ ସମସ୍ତ ଧର୍ମମାନଙ୍କ ମଧ୍ୟରେ ସତ୍ୟ ନିହିତ ହୋଇ ରହିଅଛି ।

"ସବୁ ଧର୍ମ ଏକ ପରମେଶ୍ୱରଙ୍କ ସଷ୍ଟା, ପାତା, ନିୟନ୍ତା ସ୍ୱରୂପରେ ପ୍ରତିପାଦନ କରେ । ତାହାଙ୍କୁ 'ଗଡ୍' କହ, 'ଖୋଦା' କହ, 'ବ୍ରହ୍ମ' କହ ଅଥବା ଅନ୍ୟ କୌଣସି ନାମରେ ଡାକ, ସେ ଏକ ଏବଂ ଅଦ୍ୱିତୀୟ । ତତ୍ପରେ ସମସ୍ତ ଧର୍ମ ମନୁଷ୍ୟମାନଙ୍କ ମଧ୍ୟରେ ମିତ୍ରତା ପ୍ରତିପାଦନ କରେ । ଅତଏବ ଅମ୍ଭେମାନେ ହିନ୍ଦୁ ହେଉଁ, ଅଥବା ମୁସଲମାନ, କି ଖ୍ରୀଷ୍ଟିୟାନ, କି ବୌଦ୍ଧ ଅଥବା ଅପର ଧର୍ମାବଲମ୍ବୀ ହେଉଁ, ସମସ୍ତେ ବିଶ୍ୱାସ କରୁ ଯେ ଅମ୍ଭେମାନେ ସମସ୍ତେ ଏକ ପରମେଶ୍ୱରଙ୍କ ପୁତ୍ର ଅଟୁଁ ଓ ଅମ୍ଭେମାନେ ସମସ୍ତେ ପରସ୍ପରର ଭ୍ରାତା ସଦୃଶ । ଅତଏବ ସହୋଦର ପ୍ରାୟ ହୋଇ ଅମ୍ଭେମାନେ କି କାରଣରୁ ଏକତ୍ର ବାସ ନ କରିବା ? ଏକ ପରମେଶ୍ୱରଙ୍କ ସନ୍ତାନ ଓ ପରସ୍ପରର ଭ୍ରାତା, ଏହି ଧାରଣା ଅମ୍ଭମାନଙ୍କ ମନରେ ସର୍ବଦା ଜାଗ୍ରତ ଥାଉ । ଏହି ବିଶ୍ୱାସରେ ଅମ୍ଭମାନଙ୍କର ମିତ୍ର ହେବା ଉଚିତ ।

"ଇଷ୍ଟସିଦ୍ଧି କାହାର ଅଯତ୍ନ ନୁହେ, କିନ୍ତୁ ଯେ କର୍ତ୍ତବ୍ୟ କର୍ମ କରେ, ତାହାର ଇଷ୍ଟସିଦ୍ଧି ହୋଇ ପାରେ ଓ ଯେ କର୍ତ୍ତବ୍ୟ କର୍ମ ନ କରେ, ତାହାର ଇଷ୍ଟସିଦ୍ଧି କଦାପି ହୋଇ ନ ପାରେ । ଅତଏବ ସାଧ୍ୟାନୁସାରେ ଅମ୍ଭମାନଙ୍କର କର୍ତ୍ତବ୍ୟ କର୍ମ କରିବା ବିଧେୟ । କୁରୁକ୍ଷେତ୍ର ଯୁଦ୍ଧରେ ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଅଛନ୍ତି :—

"ନ ହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମକୃତ୍ ।"
"କ୍ଷଣମାତ୍ର କୌଣସି ଲୋକ କର୍ମ ନ କରି ରହି ନ ପାରେ ।"

"ନିୟତଂ କୁରୁ କର୍ମ ତ୍ୱଂ କର୍ମ ଜ୍ୟାୟୋହ୍ୟକର୍ମଣଃ
ଶରୀରଯାତ୍ରାପି ଚ ତେ ନ ପ୍ରସିଦ୍ଧ୍ୟେଦକର୍ମଣଃ ।"

"ସର୍ବଦା କର୍ମ କର । ଆଳସ୍ୟ ଅପେକ୍ଷା କର୍ମ କରିବା ଶ୍ରେୟସ୍କର । କର୍ମ ନ କଲେ ତୁମ୍ଭର ଶରୀରରକ୍ଷା ମଧ୍ୟ ହୋଇ ପାରିବ ନାହିଁ ।"

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।"

"ନିଜର ଜନନୀ ଓ ଜନ୍ମଭୂମି ଏ ଦୁହେଁ ସ୍ୱର୍ଗ ଅପେକ୍ଷା ଗରିଷ୍ଠ ଅଟନ୍ତି ।"

"ଅମ୍ଭମାନଙ୍କର ମାତୃଭୂମି ଉତ୍କଳଦେଶ ନିଜର ଅଭାବ ମୋଚନାର୍ଥ ଅମ୍ଭମାନଙ୍କ ସମୀପରେ ଉପସ୍ଥିତ ହୋଇଅଛନ୍ତି । ତାହାଙ୍କର ଡାକ ନ ଶୁଣି ଅମ୍ଭେମାନେ କି ନିଶ୍ଚିନ୍ତ ହୋଇ ରହି ପାରୁଁ ? ଯେପର୍ଯ୍ୟନ୍ତ ତାଙ୍କର ଅଭାବ ମୋଚନ ନ ହୋଇଛି, ସେପର୍ଯ୍ୟନ୍ତ ଅମ୍ଭେମାନେ କଦାପି ସ୍ଥିର ହୋଇ ରହି ନ ପାରୁ । ଅମ୍ଭମାନଙ୍କର ଜନ୍ମଭୂମି ଉତ୍କଳଦେଶର ଅଭାବ ମୋଚନ ନ କରି କି ଅମ୍ଭେମାନେ ତାହାର ଯୋଗ୍ୟ ସନ୍ତାନ ବୋଲି ଆପଣାକୁ ଆପେ ମନମଧ୍ୟରେ ବୋଧ କରି ପାରିବା ?"

ପାଠକ ମହାଶୟ, ମହାରାଜାଙ୍କ ଦେଶାତ୍ମବୋଧ ଲକ୍ଷ୍ୟ କରନ୍ତୁ । ଉତ୍କଳ ଅଭାଗ୍ୟ ଦେଶ, ମହାରାଜା ଅକାଳରେ ଗୁଲିଗଲେ; ତାହା ନ ହୋଇଥିଲେ ନିଜ ରାଜ୍ୟର ଉନ୍ନତି ସଙ୍ଗେ ଉତ୍କଳର ଉନ୍ନତିରେ ସେ ମନ ବଳାଇଥାଆନ୍ତେ । ଶିକ୍ଷା ସମ୍ବନ୍ଧରେ ମହାରାଜାଙ୍କର କି ମତ, ପାଠକେ ଅନୁଧ୍ୟାନ କରନ୍ତୁ—

"ଶିକ୍ଷାଲାଭ କରି ମନୁଷ୍ୟ କେବଳ ନିଜର ବିଷୟ ଆଲୋଚନା କରି ପାରିଲେ ଅଥବା ପରୀକ୍ଷୋତ୍ତୀର୍ଣ୍ଣ ହୋଇ ଗଭର୍ଣ୍ଣମେଣ୍ଟ ଚାକିରି କଲେ ଯେ ତାହାର କର୍ତ୍ତବ୍ୟ କର୍ମ ସାଧିତ ହେଲା, ତାହା ନୁହେ । ପିତାମାତାଙ୍କ ପ୍ରତି, ପୁତ୍ରକନ୍ୟାଙ୍କ ପ୍ରତି, ସ୍ତ୍ରୀ ପ୍ରତି, ପ୍ରତିବାସୀଙ୍କ ପ୍ରତି ଓ ଅନ୍ୟାନ୍ୟ ବ୍ୟକ୍ତିମାନଙ୍କ ପ୍ରତି,ସମାଜ ପ୍ରତି ତାହାଙ୍କର ଯାହା କର୍ତ୍ତବ୍ୟ, ତାହା ତାହାଙ୍କୁ କରିବାକୁ ହେବ । ଶିକ୍ଷାଦ୍ୱାରା ମନୁଷ୍ୟର ଗୁଣମାନ ବିକଶିତ ହୁଏ । ଶିକ୍ଷା ଅଗ୍ରେ ବୁଦ୍ଧିକୁ ସତେଜ କରେ, ତତ୍ପରେ ସବୁ ବିଷୟରେ ଅନୁସନ୍ଧାନ କରିବାର ଇଚ୍ଛାକୁ ଜାଗ୍ରତ କରାଏ, ଆଚରଣକୁ ଗଠନ କରେ । ଅଧିକ କହିବା ନିଷ୍ପ୍ରୟୋଜନ, ଏହି ମାତ୍ର କହୁଅଛି ଯେ,

ଶିକ୍ଷା ଆପଣାର ଜାତୀୟ ଏକତାକୁ ସ୍ଥାପନ କରେ ଓ ଜନ୍ମଭର ଇଚ୍ଛା ଜାତ କରେ ।

"ରାଜା ଓ ଜମିଦାରମାନଙ୍କର ଶିକ୍ଷା ଭାରତବର୍ଷର ଅତି ଗୋଟିଏ ବିଷୟ । ସ୍ୱଭାବତଃ ସେମାନେ ସମାଜର ନେତା ଅଟନ୍ତି, ସେମାନଙ୍କ ସ୍କନ୍ଧରେ ବିଶେଷ ଦାୟିତ୍ୱ ଅଛି, ସେମାନେ ଇଚ୍ଛା କଲେ ଅନେକ ଲୋକଙ୍କର ଉପକାର କରି ପାରନ୍ତି ଓ ଅପକାର ମଧ୍ୟ କରି ପାରନ୍ତି । ଅତଏବ ସେମାନଙ୍କୁ ଏପରି ଶିକ୍ଷା ଦେବା ବିଧେୟ,ଯହିଁରେ ସେମାନେ ନିଜ ନିଜ ରାଜ୍ୟର ଓ ନିଜ ନିଜ ପ୍ରଜାବର୍ଗର ମଙ୍ଗଳ ସାଧନ କରି ପାରିବେ ।

"ବୁଦ୍ଧିକୁ ସତେଜ ଓ ତୀକ୍ଷ୍ଣ କରିବା ଶିକ୍ଷାର ଗୋଟିଏ ମୁଖ୍ୟ ଉଦ୍ଦେଶ୍ୟ । ବର୍ତ୍ତମାନ ଶିକ୍ଷା ତାହା ସମ୍ପନ୍ନ କରୁଅଛି । କିନ୍ତୁ ଧର୍ମ ଓ ନୀତି ଶିକ୍ଷା ପ୍ରଦାନରେ ବର୍ତ୍ତମାନର ଶିକ୍ଷା ସମ୍ପୂର୍ଣ୍ଣ ସମର୍ଥ ନୁହେ । ଆମ୍ଭମାନଙ୍କ ଛାତ୍ରମାନେ ବର୍ତ୍ତମାନ ଯେଉଁ ଶିକ୍ଷା ଲାଭ କରୁଅଛନ୍ତି, ତାହା କେବଳ ବିଦ୍ୟାବୃଦ୍ଧି-ଉପାର୍ଜନ । ସେଠାରୁ ଆସିଲେ ସେମାନଙ୍କ ପ୍ରତି କୌଣସି ଅଙ୍କୁଶ ଥାଏ ନାହିଁ । ସେମାନଙ୍କ ଚରିତ୍ରଗଠନ ସମ୍ବନ୍ଧରେ ବିଶେଷ ଯତ୍ନ ନାହିଁ । ବର୍ତ୍ତମାନ ଶିକ୍ଷା-ପ୍ରଣାଳୀରେ ଏଇଟି ପ୍ରଧାନ ଦୋଷ । ବର୍ତ୍ତମାନ ସମୟରେ ଯେଉଁଠାରେ ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରୁ ଛାତ୍ରମାନଙ୍କର ମନ ପ୍ରାଚୀନ ଚିନ୍ତାପଦ୍ଧତିରୁ ବିଭିନ୍ନ ହୋଇଅଛି, ସେହିଠାରେ ଏହି ଧର୍ମନୀତି ଶିକ୍ଷା ଅତି ପ୍ରୟୋଜନୀୟ । ପାଶ୍ଚାତ୍ୟ ଶିକ୍ଷା ଅନେକ କୁସଂସ୍କାରମାନଙ୍କୁ ଅନ୍ତର କରିଅଛି ସତ୍ୟ, କିନ୍ତୁ ଧର୍ମ ଓ ଧର୍ମନୀତି ଶିକ୍ଷା ଅଭାବରୁ ଆମ୍ଭ ଦେଶୀୟ ବିଦ୍ୟାର୍ଥୀମାନଙ୍କ ମନରୁ ଧର୍ମ ଓ ଧର୍ମଘଟିତ ବୃତ୍ତିମାନଙ୍କୁ ଏକାବେଳକେ ବିନାଶ କରିବାକୁ ଉଦ୍ୟତ ହୋଇଅଛି ।"

ମହାରାଜାଙ୍କର ନିମ୍ନଲିଖିତ ଅଭିମତରୁ ଓଡ଼ିଆ ଭାଷା ପ୍ରତି ତାଙ୍କର ଆନ୍ତରିକ ଆଗ୍ରହ ବେଶ୍ ଜଣାପଡ଼େ :—

"ଖବରକାଗଜଦ୍ୱାରା ଓ ସାହିତ୍ୟପ୍ରବନ୍ଧମୟ ପତ୍ରିକାଦ୍ୱାରା ସର୍ବସାଧାରଣରେ ସାହିତ୍ୟପ୍ରତି ରୁଚି ଜାତ ହୁଏ । ସ୍ୱଦେଶ ପ୍ରତି ଯେପରି ସ୍ନେହ, ସେପରି ମାତୃଭାଷା ପ୍ରତି ସ୍ନେହ କରିବା କର୍ତ୍ତବ୍ୟ । ଅଦ୍ୟ ସନ୍ତୋଷରୁ ପ୍ରକାଶ ପାଉଅଛୁ ଯେ, ଅମ୍ଭମାନଙ୍କର ଦେଶୀୟ ଲୋକେ ଏ ବିଷୟ ଉତ୍ତମରୂପେ ବୁଝିଅଛନ୍ତି । ଉତ୍କଳ ଭାଷାର ଯେତେ ଦୂର ଉନ୍ନତି ହେବା ଉଚିତ, ଯଦିଚ ତେତେ ଦୂର ଉନ୍ନତ ହୋଇ ନାହିଁ, ଯଦିଚ ତାହାର ଭଗିନୀ ବଙ୍ଗଭାଷା ସମାନ ତାହାର ଉନ୍ନତି ହୋଇ ନାହିଁ, ତଥାପି ଉତ୍କଳସାହିତ୍ୟର ଆକାଶରେ ଉଜ୍ଜ୍ୱଳ ତାରାର ଅଭାବ ନାହିଁ । କବିବର ରାଧାନାଥ ରାୟ ଓ କବି ମଧୁସୂଦନ ରାଓଙ୍କ ଲେଖିବା ପଦ୍ଧତିକୁ ଅନେକ ଶିକ୍ଷିତ ଓ ଉପଯୁକ୍ତ ଲୋକ ଅନୁକରଣ କରୁଅଛନ୍ତି । ଅତଏବ ଉତ୍କଳସାହିତ୍ୟର ଅନେକ ବିଷୟରେ ଉନ୍ନତି ଆଶା କରାଯାଏ ।"

ଦେଶରେ କଳକାରଖାନା ଓ ବାଣିଜ୍ୟ ବୃଦ୍ଧି କରିବାକୁ ହେଲେ ସର୍ବ ପ୍ରଥମେ ଟଙ୍କା ଦରକାର । ଏ ଦେଶରେ ସେପରି କୌଣସି ଅନୁଷ୍ଠାନ ଆରମ୍ଭ କରିବାପାଇଁ ମହାରାଜା କୃତସଙ୍କଳ୍ପ ହୋଇଥିଲେ ଏବଂ ନିଜେ ତାଙ୍କ ରାଜ୍ୟ ମଧ୍ୟରେ ସେପରି କେତେ ଅନୁଷ୍ଠାନର ପ୍ରତିଷ୍ଠା ମଧ୍ୟ କରିଥିଲେ । ଇଉରୋପ ଓ ଆମେରିକାବାସୀମାନେ ଯେପରି ଯୌଥ କାରବାରରେ କୃତକାର୍ଯ୍ୟ ହୋଇଅଛନ୍ତି, ଭାରତବର୍ଷରେ ସେପରି ହୋଇ ନାହିଁ । ଏହାର ପ୍ରଧାନ କାରଣ, ଭାରତୀୟ ଧନୀ ଲୋକେ ଏ ସବୁ ବିଷୟରେ ଧନ ବ୍ୟୟ କରିବାକୁ ସାହସ କରନ୍ତି ନାହିଁ ।ଏହି ସମ୍ବନ୍ଧରେ ମହାରାଜା ତାଙ୍କ ଅଭିଭାଷଣରେ କହିଅଛନ୍ତି—

"ଭାରତବର୍ଷରେ ଧନୀ ଲୋକଙ୍କ ପ୍ରତି ବଡ଼ ଦାୟିତ୍ବ ଅଛି । ସେମାନେ ଯଦି ନିଜ ନିଜ ଧନର ସଦ୍‌ବ୍ୟବହାର କରନ୍ତି, ତେବେ ସେମାନଙ୍କର ନିଜର ଓ ସେମାନଙ୍କ ଦେଶର ଉନ୍ନତି ଏବଂ ଉପକାର ହେବ । ଟଙ୍କାକୁ ନେଇ ଜମା କରି ରଖିବା ଉଚିତ ନୁହେ । ଯେତେବେଳେ ଦେଶ ଅରାଜକ ଥିଲା, ସେତେବେଳେ ସଞ୍ଚୟ କରି ରଖିବାର ଆବଶ୍ୟକତା ଥିଲା । ଟଙ୍କାକୁ ଚଳପ୍ରଚଳ କରୁଥିଲେ ନିଜର ଲାଭ ଓ ଦେଶର ଉପକାର ହୁଏ । କୌଣସି ସମୟରେ ଏପରି ହୁଏ ଯେ, ମୂଳଧନ ଲୋକସାନ ହୋଇଯାଏ । କିନ୍ତୁ ସେ ଲୋକସାନରେ ଆମ୍ଭେମାନେ ହତୋଦ୍ୟମ ନ ହୋଇ ଅଧିକ ଉଦ୍ୟମ ସହିତ କାର୍ଯ୍ୟ କରିବା ଉଚିତ । ଏ ବିଷୟ ଆମ୍ଭ-ମାନଙ୍କର ସ୍ମରଣ ରଖିବା ଉଚିତ ଯେ, ପରାଜୟ ନ ଥାଇ କୌଣସି କାର୍ଯ୍ୟ ନାହିଁ । ବାସ୍ତବରେ ପରାଜିତ ହେଲେ ଲୋକେ ଭବିଷ୍ୟତରେ ସାବଧାନ ହୁଅନ୍ତି ।

"କେହି କେହି କହନ୍ତି ଯେ, ବର୍ତ୍ତମାନ ଭାରତବର୍ଷରେ ସମସ୍ତେ ଏକତ୍ରିତ ହୋଇ କାର୍ଯ୍ୟ କରିବା ଦୁଷ୍କର; କିନ୍ତୁ ମୋ କ୍ଷୁଦ୍ର ବିବେଚନାରେ ଅନ୍ୟ ଦେଶରେ ଯାହା ହେଉ, ଆମ୍ଭମାନଙ୍କ ଉତ୍କଳ ଦେଶରେ ସେପରି ହେବ ନାହିଁ । ଆପଣମାନେ ନିଜ ନିଜର ସମୟ ନଷ୍ଟ କରି, ସୁଖ ଭଙ୍ଗ କରି ଏତେଦୂର ପଥ ଆଗମନ କରିଅଛନ୍ତି । ଆପଣମାନଙ୍କ ଅନ୍ତଃକରଣରେ ଯେଉଁ ଉତ୍ସାହ ଜାତ ହୋଇଅଛି, ତହିଁରୁ ମୋର ବିଶ୍ବାସ ହେଉଅଛି ଯେ, ଆମ୍ଭମାନଙ୍କ ଉଦ୍ୟମ ସଫଳ ହେବ । ଉତ୍କଳଦେଶର ଇତିହାସରେ ଏପରି ଗୋଟିଏ ସଭା ଅଭିନବ ବ୍ୟାପାର । ଏ ସଭାରେ ଆପଣମାନଙ୍କୁ ସାକ୍ଷାତ୍ କରି ମୋର ଅନିର୍ବଚନୀୟ ଆନନ୍ଦ ଜାତ ହୋଇଅଛି ଓ ଏହି ଦେଶହିତକର କାର୍ଯ୍ୟରେ ଆପଣମାନଙ୍କ ସହିତ ଭାଗୀ ହୋଇଥିବାରୁ ମୁଁ ନିଜକୁ କୃତକୃତ୍ୟ ମନେ କରୁଅଛି ।"

ମହାରାଜାଙ୍କ ନିଜ ଭାଷାରୁ ପାଠକେ ତାଙ୍କର ହୃଦୟବତ୍ତାର ପରିଚୟ ପାଇଲେ । ଭଗବାନ୍ ତାଙ୍କୁ ଅଧିକ ଦିନ ରଖିଥିଲେ ତାଙ୍କ ଉପରେ ଦେଶର ଯଥେଷ୍ଟ ଦାବୀ ଥିଲା, ପୂରଣ ହୋଇଥାଆନ୍ତା; ମାତ୍ର ତାହା ହେଲା ନାହିଁ ।

# ଅଷ୍ଟମ ଅଧ୍ୟାୟ



## ରାଜ୍ୟର ଉନ୍ନତି

ଖଣିଜ ଓ ବନ ଜଙ୍ଗଲରୁ ଜାତ ଦ୍ରବ୍ୟ ମୟୂରଭଞ୍ଜରେ ଯଥେଷ୍ଟ । ସେହିସବୁ ଦ୍ରବ୍ୟର ଉପଯୁକ୍ତ ବ୍ୟବହାର କରି ପାରିଲେ ରାଜ୍ୟ ଧନଶାଳୀ ହେବ, ଗରିବ ପ୍ରଜାମାନେ ମଜୁରି ପାଇ ପାରିବେ । ରାଜକୋଷରେ ପ୍ରଚୁର ଧନ ଜମା ହେଲେ ସେ ଅନାୟାସରେ ରାଜ୍ୟର ଉନ୍ନତି କରି ପାରିବେ । ପୂର୍ବେ ଜଙ୍ଗଲର ମୂଲ୍ୟବାନ୍ କାଠର କୌଣସି ମୂଲ୍ୟ ନ ଥିଲା । ଜଙ୍ଗଲ ପରିଷ୍କାର କରିବାପାଇଁ କାଠ କଟାଯାଇ ପୋଡ଼ା ହେଉଥିଲା । ଏପରି ଅବସ୍ଥା ବେଶି ଦିନ ସ୍ଥାୟୀ ହୋଇଥିଲେ ଜଙ୍ଗଲଯାକ କ୍ରମେ ନଷ୍ଟ ହୋଇ ଯାଇଥାଆନ୍ତା । ମହାରାଜା ଶ୍ରୀରାମଚନ୍ଦ୍ର ୧୮୯୪ ମସିହାରେ ଜଙ୍ଗଲବିଭାଗ ସୃଷ୍ଟି କରି ବିଶେଷଜ୍ଞ ବ୍ୟକ୍ତିମାନଙ୍କୁ ନିଯୁକ୍ତ କରିଥିଲେ । ଜଙ୍ଗଲ ସଂରକ୍ଷଣ ଓ ସମୟ ଅନୁସାରେ ମୂଲ୍ୟବାନ୍ କାଠ କଟାଇ ମୟୂର-ଭଞ୍ଜ ବାହାରେ ବିକ୍ରି କରିବାଦ୍ୱାରା ପ୍ରଭୂତ ଲାଭ ହେବାକୁ ଲାଗିଲା ।

ଜଙ୍ଗଲରୁ କାଠ ବୁହାଇ ଆଣିବାର ବିଶେଷ ସୁବିଧା କରାଇ ପାରି-ଥିଲେ ଏହି ବିଭାଗରୁ ଅଧିକ ବିଶେଷ ଲାଭ ହେବାର ସମ୍ଭାବନା ଥିଲା ।

ଏହି ଉଦ୍ଦେଶ୍ୟରେ ମହାରାଜା ଜଙ୍ଗଲ ମଧ୍ୟକୁ ଗୋଟିଏ ରେଲ୍ ଲାଇନ ଫିଟାଇବାର ମନସ୍ଥ କରିଥିଲେ । ମାତ୍ର ନାନା ପ୍ରତିବନ୍ଧକ ଯୋଗୁଁ ତାହା ହୋଇ ପାରି ନ ଥିଲା । ବଳଦ ଗାଡ଼ିରେ ଜଙ୍ଗଲମଧ୍ୟରୁ ବଡ଼ ବଡ଼ କାଠ ବୁହାଇ ଆଣିବା କଷ୍ଟକର ହେବାରୁ, ବାଙ୍ଗିପୋସି ନାମକ ସ୍ଥାନରେ ସେ ଗୋଟିଏ ବଡ଼ କରତ କଳ ବସାଇଥିଲେ । କଣ୍ଡ, ବଗା, ଶିମିକାଠ ଓ ପଟା ଇତ୍ୟାଦ ଏହି କଳଦ୍ୱାରା ଚିରା ଯାଇ ସହଜରେ ବୁହାଯାଇ ପାରୁଥିଲା ଏବଂ ରାଜ୍ୟ ବାହାରେ ବିକ୍ରି ହେଉଥିଲା ।

ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ପୂର୍ବରୁ ଜଙ୍ଗଲ ବିଭାଗରୁ ୩୦୦୦୦ଟଙ୍କାରୁ ଊର୍ଦ୍ଧ୍ୱ ଆୟ ହୋଇ ପାରୁ ନ ଥିଲା । ତାଙ୍କ ସମୟରେ କେବଳ ଏହି ବିଭାଗର ବାର୍ଷିକ ଆୟ ପ୍ରାୟ ଅଢ଼ାଇ ଲକ୍ଷ ଟଙ୍କା ହୋଇଥିଲା । ଜଙ୍ଗଲ ବିଭାଗରୁ ଏତେ ଆୟ କରି ମଧ୍ୟ ସେ ପ୍ରଜାଙ୍କର କୌଣସି ସ୍ୱତ୍ୱ ଉପରେ ହସ୍ତକ୍ଷେପ କରି ନ ଥିଲେ । ପୂର୍ବେ ପ୍ରଜାମାନେ ଯେଉଁପରି ନିଜ ନିଜ ବ୍ୟବହାର ପାଇଁ ଜଙ୍ଗଲରୁ କାଠ କାଟି ପାରୁଥିଲେ, ମହାରାଜାଙ୍କ ସମୟରେ ମଧ୍ୟ ସେମାନଙ୍କର ସେହି କ୍ଷମତା ଲେଶମାତ୍ର ସଙ୍କୁଚିତ କରା ଯାଇ ନ ଥିଲା ।

ମହାରାଜାଙ୍କ ପୂର୍ବରୁ ଖନିଜ ପଦାର୍ଥରୁ କୌଣସି ଆୟ ହେଉ ନ ଥିଲା । ପୁରୁଣା ଧରଣର କେତେକ ପଥର ବାସନ ତିଆରି ହୋଇ ରାଜ୍ୟ ମଧ୍ୟରେ ବିକ୍ରି ହେଉଥିଲା । ରକ୍ତ ଓ ପୀତ ରଙ୍ଗର ଖନିଜ ପଦାର୍ଥଦ୍ୱାରା ସାନ୍ତାଳମାନେ ଘରଦ୍ୱାର ଲିପି ରଙ୍ଗାଉଥିଲେ । ବ୍ରାହ୍ମଣଘାଟି ଓ ଅନ୍ୟାନ୍ୟ ସ୍ଥାନର କେତେକ ଲୋକେ ସ୍ୱର୍ଣ୍ଣରେଣୁ ଅହରଣ କରି କିଛି ଉପାୟ କରୁଥିଲେ । ରାଜ୍ୟତମାମ୍ ଲୌହ ବାହାର କରିବା ଭଳି, ଖନିଜ ପଦାର୍ଥରୁ କମାରମାନେ ଲୌହ ଅମଦାନୀ କରି ବ୍ୟବହାର କରୁଥିଲେ । ଏପର୍ଯ୍ୟନ୍ତ କେହି ମୟୂରଭଞ୍ଜର ଖନିଜ ଦ୍ରବ୍ୟର

ମୂଲ୍ୟ ଓ ଏହାଦ୍ୱାରା ରାଜ୍ୟର କେତେ ଆୟ ହୋଇ ପାରେ, ଏହା ନିରୂପଣ କରିବାର ଚେଷ୍ଟା କରି ନ ଥିଲେ । ମହାରାଜା ଶ୍ରୀରାମଚନ୍ଦ୍ର ଏ ସବୁ ବିଷୟର ତଥ୍ୟ ଅନୁସନ୍ଧାନ କରିବା ନିମିତ୍ତ ବିଶେଷଜ୍ଞ ନିଯୁକ୍ତ କଲେ । ବିଶେଷଜ୍ଞଙ୍କ ରିପୋର୍ଟରୁ ଖନିଜ ପଦାର୍ଥରୁ ରାଜ୍ୟର ଅଶେଷ ଆୟର ସମ୍ଭାବନା ବୁଝି ପାରି ସେ ପ୍ରଫୁଲ୍ଲ ହୋଇଥିଲେ । ବମ୍ବେଇର ବିଖ୍ୟାତ ଧନକୁବେର ଟାଟା କୋମ୍ପାନୀ ୧୯୦୬ ମସିହାରେ ମୟୂରଭଞ୍ଜର ଗୁରୁମହିଷାଣୀ ଓ ସୁଲେଇପାଟ ପର୍ବତରୁ ଲୌହ ଆମଦାନୀ କରିବାର ଅନୁମତି ପାଇଥିଲେ ।

୧୯୦୮ ମସିହାରେ ଉକ୍ତ ଟାଟା କମ୍ପାନୀ ଲୌହ ଆମଦାନୀ କରିବା ନିମିତ୍ତ ଉପଯୁକ୍ତ ଗୃହ ଓ କାରଖାନା ନିର୍ମାଣ କଲେ ଏବଂ ଗୁରୁମହିଷାଣୀ ପାହାଡ଼ଠାରୁ କାଳିମାଟି ପର୍ଯ୍ୟନ୍ତ ରେଲ୍ ଲାଇନ୍ ବସାଇଥିଲେ । ସାକ୍‌ଚିଠାରେ ଟାଟା କମ୍ପାନୀଙ୍କର ବର୍ତ୍ତମାନ ଯେଉଁ ଲୌହ କାରଖାନା ଚାଲିଅଛି, ତାହାର ସମସ୍ତ ଲୌହ ମୟୂରଭଞ୍ଜରୁ ଆମଦାନୀ ହୋଇ ଯାଉଅଛି । ଲୌହ ବ୍ୟତୀତ ଅନ୍ୟାନ୍ୟ ଖନିଜ ଆମଦାନୀ କରିବା ନିମିତ୍ତ ମଧ୍ୟ ବିଶେଷ ଚେଷ୍ଟା ହୋଇଥିଲା

ମୁଗୁନି ପଥର ଓ ଅନ୍ୟାନ୍ୟ ପଥରରୁ ଉତ୍କୃଷ୍ଟ ଧରଣର ପଥର ବାସନ ନିର୍ମାଣ କରି ଦେଶବିଦେଶକୁ ରପ୍ତାନି କରିବା ଉଦ୍ଦେଶ୍ୟରେ ମହାରାଜା କଲିକତାର କେତେକ କାରିଗରମାନଙ୍କୁ ପଥର ବାସନ ଆମଦାନୀ କରିବାର ଅନୁମତି ଦେଇଥିଲେ । ସ୍ଥାନୀୟ କାରିଗରମାନଙ୍କୁ ଉତ୍ତମ ବାସନ ନିର୍ମାଣ କରିବାର କୌଶଳ ଶିକ୍ଷା ଦେଇ କାର୍ଯ୍ୟରେ ଲଗାଇ ଦେଇଥିଲେ । ଫଳରେ ପ୍ରଚୁର ପଥର ବାସନ ନିର୍ମିତ ହୋଇ କଲିକତା ପ୍ରଭୃତି ସ୍ଥାନରେ ବିକ୍ରି ହେବାକୁ ଲାଗିଲା ।

ବୁଢ଼ାବଳଙ୍ଗ ନଦୀ ସିମିଳିପାଳ ପର୍ବତର ଦୁଇ ସ୍ଥାନରୁ ନିମ୍ନ ଭୂମିକୁ ଅବତରଣ କଲାବେଳେ ସୁନ୍ଦର ଜଳପ୍ରପାତର ସୃଷ୍ଟି କରେ । ଏହି ଜଳ ପ୍ରାୟ ୪୦୦ ହାତ ଉଚ୍ଚରୁ ତଳକୁ ଘର୍ଘର ନାଦରେ ପଡ଼ି ବହି ଚାଲିଯାଏ । ଏହି ପ୍ରପାତଦ୍ୱାରା ଯେଉଁ ଶକ୍ତିର ସୃଷ୍ଟି ହୁଏ, ତାହାଦ୍ୱାରା ବିଦ୍ୟୁତ୍‌ପ୍ରବାହ ଚାଳନ କରାଯାଇ ପାରିବ କି ନା, ଏହା ଅନୁସନ୍ଧାନ କରିବା ନିମିତ୍ତ ମହାରାଜା ଶ୍ରୀରାମଚନ୍ଦ୍ର ବିଦେଶୀୟ ବିଶେଷଜ୍ଞ ବ୍ୟକ୍ତିମାନଙ୍କୁ ନିଯୁକ୍ତ କଲେ । ଇଚ୍ଛା ଥିଲା, ଏହିଠାରୁ ବିଦ୍ୟୁତ୍‌ପ୍ରବାହ ନେଇ କଲିକତାରେ ବ୍ୟବହୃତ କରିବେ । ମାତ୍ର ଦୂରତ୍ୱ ଓ ବ୍ୟୟବାହୁଲ୍ୟ ଯୋଗୁଁ ସେ କାର୍ଯ୍ୟ ମହାରାଜାଙ୍କ ଅମଳରେ ସମ୍ପନ୍ନ ହୋଇ ପାରି ନାହିଁ ।

ରାଜ୍ୟର ଏହି ସବୁ ଉନ୍ନତି ଯୋଗୁଁ ରାଜ୍ୟର ଧନବୃଦ୍ଧି ହେଲା, ପ୍ରଜାମାନେ କାର୍ଯ୍ୟଗାଇଁ ବିଦେଶରୁ ଧନ ସଂଗ୍ରହ କରି ସୁଖୀ ହେଲେ । ପୂର୍ବେ ଯେଉଁ ମୟୂରଭଞ୍ଜର ବାର୍ଷିକ ଆୟ ଚାରି ଲକ୍ଷକୁ ଟପି ପାରୁ ନ ଥିଲା, ମହାରାଜାଙ୍କ ଯତ୍ନ ଓ ଅଦମ୍ୟ ପରିଶ୍ରମ ଯୋଗୁଁ ସେହି ମୟୂରଭଞ୍ଜର ଆୟ ତେର ଚୌଦ ଲକ୍ଷ ଟଙ୍କା ହୋଇଥିଲା । ଏତେ ଧନ ଆୟ କଲେ ମଧ୍ୟ ମହାରାଜା ନିଜର ବ୍ୟୟ ବୃଦ୍ଧି କରି ନ ଥିଲେ । ମହାରାଣୀ ବା ରାଜଅନ୍ତଃପୁର ମହିଳାମାନଙ୍କ ନିମିତ୍ତ ବହୁମୂଲ୍ୟ ଭୂଷଣରେ ଅର୍ଥବ୍ୟୟ କରି ନ ଥିଲେ । ରାଜ୍ୟର ଆୟ ପ୍ରଜାମାନଙ୍କ ଉପକାର ନିମିତ୍ତ । ରାଜ୍ୟରେ ରାସ୍ତା, ଘାଟ ଓ ଶିକ୍ଷା ବିସ୍ତାରରେ ରାଜ୍ୟର ପ୍ରାୟ ସମସ୍ତ ଆୟ ବ୍ୟୟିତ ହେଉଥିଲା । ଦେଶରେ କୌଣସି ସମୟରେ ଦୁର୍ଭିକ୍ଷ ପଡ଼ିଲେ ସେଥିପାଇଁ ପୂର୍ବେ ରାଜକୋଷରେ କୌଣସି ଅର୍ଥ ଜମା କରିବାର ବ୍ୟବସ୍ଥା ନ ଥିଲା । ମହାରାଜା ରାଜ୍ୟର ସମସ୍ତ ଖର୍ଚ୍ଚ ବହନ କରି ଭବିଷ୍ୟତ୍ ଦୁର୍ଘଟନା ନିମିତ୍ତ ପ୍ରଚୁର ଅର୍ଥ ଜମା ରଖି ପାରୁଥିଲେ । ଏପରି କି, କେବଳ ଏଥିପାଇଁ ସେ ଏଗାର ଲକ୍ଷ ଟଙ୍କା ରଖି ଯାଇଅଛନ୍ତି ।

ମହାରାଜାଙ୍କ ପୂର୍ବରୁ ରାଜ୍ୟରେ ରାସ୍ତା ଘାଟ ପ୍ରସ୍ତୁତ କିଛି ନ ଥିଲା । ବିଶେଷତଃ ବର୍ଷା ଦିନେ ମଫସଲ ଯିବା ଆସିବା ଏକରକମ ଅସମ୍ଭବ ହୋଇଥିଲା । ଷ୍ଟେଟ୍ କର୍ମଚାରୀମାନଙ୍କ ରହିବା ନିମିତ୍ତ ଘର ନ ଥିଲା, ଡାକବଙ୍ଗଳା ନ ଥିଲା । ବାରିପଦା ସହରରେ ମଧ୍ୟ ବର୍ଷାଦିନେ ରାସ୍ତାରେ ପାଣି ଜମା ହୋଇ ରହୁଥିଲା । କଚେରୀଘର ଯେ କେତେ ଖଣ୍ଡ ଥିଲା, ସବୁ ଚାଳ ଘର । ମହାରାଜାଙ୍କ ଯତ୍ନରେ ମୟୂରଭଞ୍ଜ ତମାମ୍ ସୁନ୍ଦର ପକ୍କା ରାସ୍ତା ନିର୍ମିତ ହେବାକୁ ଲାଗିଲା । କଚେରୀଘର ସବୁ ପକ୍କା ହେଲା । ସ୍ଥାନେ ସ୍ଥାନେ କର୍ମଚାରୀ ଓ ପର୍ଯ୍ୟଟକମାନଙ୍କ ରହିବା ନିମିତ୍ତ ଡାକବଙ୍ଗଳା ତୋଳାଗଲା । ଏହିପରି ଅତି ଅଳ୍ପ ସମୟ ମଧ୍ୟରେ ମୟୂରଭଞ୍ଜ ଗଡ଼ଜାତ ରାଜ୍ୟର ଅବସ୍ଥାରୁ ଗୋଟିଏ ସୁମାର୍ଜିତ ଆଧୁନିକ ଧରଣର ଜିଲ୍ଲାରେ ପରିଣତ ହୋଇଗଲା ଏବଂ ଓଡ଼ିଶାର ଅନ୍ୟ ସମସ୍ତ ଗଡ଼ଜାତ ରାଜ୍ୟକୁ ପଛରେ ପକାଇ ଦେଇ ଉନ୍ନତିପଥରେ ଅଗ୍ରସର ହେବାକୁ ଲାଗିଲା ।

ବାରିପଦାଠାରେ ଦେବାନୀ ଓ ଫୌଜଦାରୀ ଅଦାଲତ କଚେରୀ ଓ ପୁଲିସ ଥାନା ସବୁ ନୂଆ ହୋଇ ନିର୍ମିତ ହେଲା । ମଫସଲର ତିନି ସବ୍-ଡିଭିଜନ୍‌ମାନଙ୍କରେ ମଧ୍ୟ କଚେରୀଘର, ଥାନା, ସ୍କୁଲ ଓ ଡାକ୍ତରଖାନା ନିମିତ୍ତ ସୁନ୍ଦର ପକ୍କା ଘରମାନ ତୋଳାଗଲା । ଷ୍ଟେଟ୍ କର୍ମଚାରୀମାନଙ୍କ ରହିବା ନିମିତ୍ତ ପକ୍କା ଘର ତିଆରି ହେଲା ଏବଂ ଦରମା ଅନୁପାତ ଦୃଷ୍ଟିରେ ଭଡ଼ା ସ୍ଥିର କରାଯାଇ କର୍ମଚାରୀମାନଙ୍କୁ ଭଡ଼ା ଦିଆଗଲା । ବାରିପଦାଠାରେ ଏଡୁଆର୍ଡ଼ ଦାତବ୍ୟ ଚିକିତ୍ସାଳୟ ନାମରେ ଗୋଟିଏ ପ୍ରକାଣ୍ଡ ଡାକ୍ତରଖାନା ନିର୍ମାଣ କରାଗଲା । ଏହା ଛଡ଼ା ରାଜ୍ୟର ଉପଯୁକ୍ତ ସ୍ଥାନମାନଙ୍କରେ ଛଅଟି ପକ୍କାଘର ତୋଳାଯାଇ, ସେଠାରେ ଡାକ୍ତରଖାନାମାନ ସ୍ଥାପିତ ହେଲା । ବାରିପଦାର କାରାଗାର ନୂଆ

ତୋଲା ହେଲା ଏବଂ ଏଥିରେ ଛଅଶତ ବନ୍ଦୀ ସ୍ୱଚ୍ଛନ୍ଦରେ ରହି ପାରିବାର ବନ୍ଦୋବସ୍ତ ହେଲା । ଗସ୍ତ ସମୟରେ କର୍ମଚାରୀ ଓ ଅନ୍ୟାନ୍ୟ ଭଦ୍ରବ୍ୟକ୍ତି-ମାନଙ୍କ ରହିବା ସକାଶେ ରାଜ୍ୟର ନାନା ସ୍ଥାନରେ ୩୦ ଗୋଟି ଡାକ ବଙ୍ଗଳା ନିର୍ମିତ ହୋଇଥିଲା । ବାରିପଦାର ଉଚ୍ଚ ଇଂରାଜୀ ସ୍କୁଲ ଗୃହ ଓ ପ୍ରକାଣ୍ଡ ହଲ ନିର୍ମାଣ କରାଯାଇଥିଲା । ପୁସ୍ତକାଳୟ ଓ ପଠନାଗାରର ଅଭାବ ଅନୁଭବ କରି ମହାରାଜା ଭିକ୍ଟୋରିଆ ଇନ୍‌ଷ୍ଟିଚ୍ୟୁଟ୍ ନାମରେ ଗୋଟିଏ ସୁନ୍ଦର ଗୃହ କରାଇ ଅନେକ ପ୍ରକାର ପୁସ୍ତକ ସଂଗ୍ରହ କରି ରଖିଥିଲେ ଏବଂ ଏହି ଗୃହର ଏକ ଅଂଶ ଯାଦୁଘରରୂପେ ବ୍ୟବହାର କରି ତହିଁରେ ପୁରାତନ ଅନେକ ଜିନିଷ ଓ ରାଜ୍ୟରେ ପ୍ରସ୍ତୁତ ହେଉଥିବା ପଦାର୍ଥସବୁ ସଂଗ୍ରହ କରି ରଖିଥିଲେ ।

ପୁରୁଣା ସରୁ କଚ୍ଚା ରାସ୍ତା ସବୁ ମରାମତ କରାଇ ସେ ପକ୍କା ସଡ଼କ ନିର୍ମାଣ କରାଇ ଦେଇଥିଲେ ଓ ନୂଆ ରାସ୍ତା ମଧ୍ୟ ନିର୍ମାଣ କରାଇଥିଲେ । ମହାରାଜାଙ୍କ ଅମଳରେ ୫୦୨ ମାଇଲ ରାସ୍ତା କରାଯାଇଥିଲା । ଅତି ଅଳ୍ପ ସମୟରେ ମୟୂରଭଞ୍ଜର ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ଆସିବା କରିବାର ଅସୁବିଧା ସମ୍ପୂର୍ଣ୍ଣ ଦୂର ହେଲା । ରୁପ୍‌ସାଠାରୁ ବାରିପଦା ପର୍ଯ୍ୟନ୍ତ ରେଲ ଲାଇନ୍ ଖୋଲାଯାଇ ଷ୍ଟେଟକୁ ବାହାର ସଙ୍ଗେ ଯୋଗ କରି ଦିଆଗଲା ଏବଂ ଯାତାୟାତ ଓ ଜିନିଷପତ୍ର ବୁହାଇ ନେବାର ସୁବିଧା ହୋଇଥିଲା । ମହାରାଜା ନିଜେ ଷ୍ଟେଟରୁ ସମସ୍ତ ବ୍ୟୟ ବହନ କରି ନିଜର ଇଞ୍ଜିନିୟରଙ୍କ ସାହାଯ୍ୟରେ ଏହି ରେଲ ଲାଇନ୍ ନିର୍ମାଣ କରାଇ-ଥିଲେ । ପୁରୀ, କଟକ ଓ କଲିକତାଠାରେ ମଧ୍ୟ ସୁନ୍ଦର ଆବାସଭବନମାନ ନିର୍ମିତ ହୋଇଥିଲା ।

ରାସ୍ତା ଓ ରାଜ୍ୟର କଚେରୀ ଆଦି ଗୃହ ନିର୍ମାଣ କରାଇବାରେ ବାର୍ଷିକ ଚାରି ଲକ୍ଷ ଟଙ୍କାରୁ ଊର୍ଦ୍ଧ୍ୱ ଖର୍ଚ୍ଚ ହେଉଥିଲା । ପୂର୍ବେ ସମ୍ପ୍ରଦାୟ

ମୟୂରଭଞ୍ଜର ବାର୍ଷିକ ଆୟ ମଧ୍ୟ ଏତେ ଟଙ୍କା ନ ଥିଲା । ନିଜର ଅଦମ୍ୟ ଉତ୍ସାହ, କର୍ମତତ୍ପରତା ଓ ଏକାଗ୍ରତା ଯୋଗୁଁ ମହାରାଜା ଧନବ୍ୟୟ ସଙ୍ଗେ ରାଜ୍ୟର ସମୂହ ଉନ୍ନତି କରି ପାରିଥିଲେ ।

କୃଷିର ଉନ୍ନତି ଓ ଉତ୍ତରୋତ୍ତର କୃଷି-ଜମି ବୃଦ୍ଧି କରିବା ଉଦ୍ଦେଶ୍ୟରେ ମହାରାଜା ଯଥେଷ୍ଟ ଚେଷ୍ଟା କରିଥିଲେ । ମାତ୍ର କୃଷି ବୃଷ୍ଟି ଉପରେ ନିର୍ଭର କରେ । ଯେଉଁ ବର୍ଷ ଯଥାସମୟରେ ବୃଷ୍ଟି ନ ହୁଏ, ସେ ବର୍ଷ ଫସଲ ହାନି ହୁଏ । ଏହାର କୌଣସି ପ୍ରତିକାର ନ କଲେ, ପ୍ରଜା ଉପରକୁ ବୃଦ୍ଧି କୃଷର ଉନ୍ନତି କରି ନ ପାରେ । ଗ୍ରୀଷ୍ମ ସମୟରେ ଜଳ ସରବରାହ ନିତାନ୍ତ ଅବଶ୍ୟକ । ଏହି ଉଦ୍ଦେଶ୍ୟରେ ହଲଡହ ଓ ହଲଦଅଠାରେ ଜଳଭଣ୍ଡାର ରଖି ଛୋଟ ଛୋଟ ନାଳଦ୍ୱାରା କୃଷିକ୍ଷେତ୍ରକୁ ଜଳ ଯୋଗାଇବାର ବ୍ୟବସ୍ଥା ହେଲା । ଏହି ଜଳଭଣ୍ଡାର ଓ ନାଳ ନିର୍ମାଣ କରିବାରେ ଛଅ ଲକ୍ଷ ଟଙ୍କାରୁ ଉର୍ଦ୍ଧ୍ୱ ଖର୍ଚ୍ଚ ହୋଇଥିଲା । ଏହାଦ୍ୱାରା କୃଷିର ସମ୍ପୂର୍ଣ୍ଣ ଉନ୍ନତି ହେଲା । ସହସ୍ର ସହସ୍ର ମାଣ ପଡ଼ିଆ ଭୂମି ଉଟିଆ ହୋଇ ନୀଳ ଓ ପୀତ ଶସ୍ୟକ୍ଷେତ୍ରରେ ପରିପୂର୍ଣ୍ଣ ହୋଇ ନୟନମନ ହରଣ କଲା । ପ୍ରଜାକୁ କେବଳ ଉପରକୁ ବୃଦ୍ଧି ହା ହତୋସ୍ମି ହୋଇ ବସି ରହିବାକୁ ହେଲା ନାହିଁ । ରାଜ୍ୟରେ ଲକ୍ଷ୍ମୀ ବିରାଜମାନ ହେଲେ । ମହାରାଜାଙ୍କ ପ୍ରଶସ୍ତ ମନ କେବଳ ଏ ଦୁଇଟି ଜଳଭଣ୍ଡାର କରିଦେଇ ନିଶ୍ଚିନ୍ତ ନ ଥିଲା; ଇଚ୍ଛା ଥିଲା, ବୁଢ଼ାବଳଙ୍ଗ ନଦୀର ଉପଯୁକ୍ତ ସ୍ଥଳରେ ବନ୍ଧ ପକାଇ ସମସ୍ତ ଜଳକୁ ଅଟକ ରଖିବେ । ତାହା ହୋଇଥିଲେ ସମସ୍ତ ରାଜ୍ୟ ଅସୀମ ସମୃଦ୍ଧିସମ୍ପନ୍ନ ହୋଇଥାଆନ୍ତା, ବର୍ଷତମାମ୍ ରାଜ୍ୟରେ ନାନାପ୍ରକାର ଫସଲ ପ୍ରସ୍ତୁତ ହୋଇ ଦେଶ ବିଦେଶକୁ ପଠାଯାଇଥାଆନ୍ତା, ମୟୂରଭଞ୍ଜ ଜଗତକୁ ସମ୍ପୂର୍ଣ୍ଣ ଭାବରେ ଦେଖାଇ ପାରିଥାଆନ୍ତା, ରାଜ୍ୟର ଉନ୍ନତିରେ ପ୍ରଜାର ଉନ୍ନତି । ରାଜା

ପ୍ରଜାର ଶୋଷକ ନ ହୋଇ ପାଳକ ଓ ରକ୍ଷକ । ଏଡ଼େ ଭାଗ୍ୟ, ଏଡ଼େ ସୁଦିନ ଅଭିଶପ୍ତ ଉତ୍କଳ ପକ୍ଷରେ ବିଧାତା ସେ ସମୟରେ ବିଧାନ କରିଥିଲେ, ମହାରାଜା ଶ୍ରୀରାମଚନ୍ଦ୍ର ଅସମୟରେ, ଆକସ୍ମିକ ଭାବରେ ସଂସାରଲୀଳା ଶେଷ କରି ନ ଥାନ୍ତେ ।



# ନବମ ଅଧ୍ୟାୟ



## ମୃତ୍ୟୁ

ମୃତ୍ୟୁ କଠୋର, ମୃତ୍ୟୁ ଭୟାବହ; ମାତ୍ର ପବିତ୍ର । ସଂସାର ସଙ୍ଗେ, ଆତ୍ମୀୟ ସ୍ୱଜନ, ପରିଚିତ ଓ ଅପରିଚିତଙ୍କ ସଙ୍ଗେ ଚିରବିଚ୍ଛେଦ ମୃତ୍ୟୁର ନାମାନ୍ତର ମାତ୍ର । ଏଥିପାଇଁ ମୃତ୍ୟୁ କଷ୍ଟକର । ମୃତ୍ୟୁ ଜଗନ୍ନିୟନ୍ତାଙ୍କର ତପ୍ତ ଲୌହଶଲାକା—ଯେପରି ଇଙ୍ଗିତରେ ଦେଖାଇ ଦିଏ—ତୋର ରାସ୍ତା ଏହି ! ମନା କରିବାର ଉପାୟ ନାହିଁ, ଫାଙ୍କି ଦେଇ ଉଡ଼ାଇ ଦେବା ଅସମ୍ଭବ । ଭଲ କର, ମନ୍ଦ କର, ପର ଉତ୍ପୀଡ଼ନ କର, ପରୋପକାର କର, ରାଜା ହୁଅ, ବାଦ୍‌ଶା ହୁଅ, ଧନୀ ହୁଅ, ଗରିବ ହୁଅ, ଏହା ତୁମ୍ଭର ବନ୍ଧା ରାସ୍ତା । ପରପାର ମନୁଷ୍ୟ ନିକଟରେ ପ୍ରହେଳିକାପୂର୍ଣ୍ଣ ଅନ୍ଧକାର । କବି ଓ ଦାର୍ଶନିକର ସ୍ୱର୍ଗ ଓ ନରକ କଳ୍ପନାପ୍ରସୂତ । ପରପାର ଅଜ୍ଞାତ, ଏଥିପାଇଁ ମୃତ୍ୟୁ ଭୟାବହ । ସଂସାରର ବିଚାର, ସଂସାରର ନ୍ୟାୟ ମୃତ୍ୟୁ ନିକଟରେ ପରାସ୍ତ—ସେ 'ଆଚମ୍ବିତରେ ଆସି ହାବୋଡ଼ି ଯାଏ,' ନ୍ୟାୟ ଅନ୍ୟାୟ, ବିଚାର ଅବିଚାର ମାନେ ନାହିଁ, ମନୁଷ୍ୟର ସୁଖ ଦୁଃଖ ଆଡ଼କୁ ସେ ଭ୍ରୂକ୍ଷେପ କରେ ନାହିଁ । ଏହା

ସର୍ବଶକ୍ତିମାନ୍ ସର୍ବନିୟନ୍ତାଙ୍କ ଆଦେଶ, ଏଥିପାଇଁ ଏହା ପବିତ୍ର । ଉପକାରୀ ସଜ୍ଜନର ସଂସାରରୁ ତିରୋଧାନ ବଡ଼ କଷ୍ଟଦାୟକ ହେଲେହେଁ ସଂସାର ଉପରେ ତାହାର ପରିଣାମ ଶୁଭପ୍ରଦ । ଆତ୍ମୀୟ-ସ୍ୱଜନ-ବିଚ୍ଛେଦ ଯେତେ କଷ୍ଟକର, ହୃଦୟ-ବିଦାରକ ହେଲେ ମଧ୍ୟ ତାହା ଆମ୍ଭମାନଙ୍କୁ ସେହି ଅସୀମ ଶକ୍ତିର ନିକଟବର୍ତ୍ତୀ କରାଇ ଦିଏ—ଏଥିପାଇଁ ମୃତ୍ୟୁ ପବିତ୍ର ।

ବିଦେଶରୁ ଫେରି ଆସିବାର ଅଳ୍ପଦିନ ପରେ ସମ୍ରାଟଙ୍କ ଭାରତ ଆଗମନ ଉପଲକ୍ଷରେ ମହାରାଜାଙ୍କୁ ବହୁ ଶ୍ରମ ସ୍ୱୀକାର କରିବାକୁ ପଡ଼ିଥିଲା । ୧୯୧୨ ମସିହା ଜାନୁୟାରୀ ମାସରେ ଦିଲ୍ଲୀଠାରେ ଯେଉଁ ଦରବାର ହୋଇଥିଲା, ସେ ତହିଁରେ ଯୋଗ ଦେଇଥିଲେ ଏବଂ ତତ୍ପରେ ସମ୍ରାଟ୍ ଯେତେବେଳେ କଲିକତା ଆସିଲେ, ସେ ସମୟରେ ମୟୂରଭଞ୍ଜର ଛଉନାଚ ଦେଖି ସମସ୍ତେ ମୁଗ୍ଧ ହୋଇଥିଲେ ।

ଜାପାନ, ଆମେରିକା ଓ ଇଂଲଣ୍ଡ ପରିଭ୍ରମଣ କରି ମହାରାଜା ଶ୍ରୀରାମଚନ୍ଦ୍ର ସ୍ୱାଧୀନ ଦେଶର ବିଶିଷ୍ଟ ଅନୁଷ୍ଠାନମାନ ଦେଖି ତାହାର ଅନୁକରଣରେ ନିଜ ଦେଶରେ ସେହିପରି ଅନୁଷ୍ଠାନ ପ୍ରତିଷ୍ଠା କରିବାର କେତେ ସୁଖସ୍ୱପ୍ନ କେତେ ମଧୁର କଳ୍ପନା ମନରେ ଆଙ୍କି ଦେଇଥିଲେ । ସେହି ସବୁ କଳ୍ପନା ମଧ୍ୟରେ ମୟୂରଭଞ୍ଜର ଜଙ୍ଗଲ ମଧ୍ୟଭାଗକୁ ରେଲ ଲାଇନ ବିସ୍ତାର କରିବା ଅନ୍ୟତମ ଥିଲା । ଏହି ରେଲ ଲାଇନଦ୍ୱାରା ଜଙ୍ଗଲର ମୂଲ୍ୟବାନ୍ କାଠ ପଥର ଅଳ୍ପ ଖର୍ଚ୍ଚରେ ବୁହା ହୋଇ ରାଜ୍ୟର ବାହାରେ ବହୁ ମୂଲ୍ୟରେ ବିକି ହୁଅନ୍ତା—ରାଜ୍ୟ ବହୁ ପରିମାଣରେ ଲାଭବାନ୍ ହୁଅନ୍ତା । ଏହି ଉଦ୍ଦେଶ୍ୟରେ ବଙ୍ଗ-ନାଗପୁର ରେଲ୍ କମ୍ପାନୀର କେତେକ ବଡ଼ ବଡ଼ କର୍ମଚାରୀମାନଙ୍କୁ ମହାରାଜା ମୟୂରଭଞ୍ଜକୁ ନିମନ୍ତ୍ରଣ କରିଥିଲେ । ଜଙ୍ଗଲ ପରୀକ୍ଷା କରି ଦେଖିବା ପାଇଁ ସେମାନେ ବାରିପଦା

ଆସିଲେ ଏବଂ ଜାନୁଆରୀ ୩୦ ତାରିଖ ଦିନ ଶିକାର କରିବା ପାଇଁ ଜଙ୍ଗଲକୁ ଯାଇଥିଲେ । ଶିକାରୀମାନେ ଝାଡ଼ ଜଙ୍ଗଲ ପିଟି ପିଟି କୌଣସି ଜନ୍ତୁର ସନ୍ଧାନ ନ ପାଇ ହତୋତ୍ସାହ ହୋଇ ଫେରି ଆସିଲେ । ମହାରାଜା ଏ ଖବର ପାଇ ବ୍ୟଥିତ ହେଲେ ଏବଂ ପରଦିନ ନିଜେ ଯାଇ ସେମାନଙ୍କ ସଙ୍ଗେ ଶିକାର ଅନ୍ୱେଷଣ କରିବେ ବୋଲି ପ୍ରତିଶ୍ରୁତ ହୋଇଥିଲେ ।

ପରଦିନ ଉପରବେଳା ମହା ଆଡ଼ମ୍ବରରେ ଶିକାରଯାତ୍ରାର ଯୋଗାଡ଼ ହେଲା । ଚାକର, ନୌକର, ବାଜାବାଲା ଅନେକ ଗଲେ । ମହାରାଜା ନିଜେ ଜଣେ ବିଖ୍ୟାତ ଶିକାରୀ, ଶିକାରର ସବୁ କୌଶଳ ତାଙ୍କୁ ଜଣା । ସ୍ଥାନେ ସ୍ଥାନେ ମଞ୍ଚା ବନ୍ଧା ଯାଇଥିଲା । ଗୋଟିଏ ମଞ୍ଚାରେ ମହାରାଜା ଓ ଅନ୍ୟାନ୍ୟ ମଞ୍ଚାରେ ସାହେବମାନେ ବନ୍ଧୁକ ଧରି ଜଗି ରହିଲେ । ଚାକରବାକରମାନେ ପଶୁ ହୁରୁଡ଼ାଇ ଆଣିବାକୁ ଲାଗିଲେ । ଦୁଇଟି ଭାଲୁ ଦୃଷ୍ଟିଗୋଚର ହେବାମାତ୍ରେ ଗୁଳି ଫାଏର୍ ହେଲା— ଗୋଟିଏ ମରି ପଡ଼ିଲା, ଆଉଟି ପଳାଇ ଗଲା । ଶିକାରୀମାନେ ମନେ କଲେ, ହୁଏ ତ ସେଇଟି ଆହତ ହୋଇ ଲୁଚି ଯାଇଥିବ ।

ମହାରାଜାଙ୍କ ମଞ୍ଚାରେ ସେ ନିଜେ ଏବଂ ତାଙ୍କର ପ୍ରଧାନ ବିଶ୍ୱସ୍ତ ଅନୁଚର ରାଧୁ ସଙ୍ଗରେ ଥିଲା । ଅନ୍ୟାନ୍ୟ ମଞ୍ଚାରେ ଯେଉଁ ସବୁ ଶିକାରୀମାନେ ଥିଲେ, ସେମାନେ ଆହତ ଭାଲୁର ଅନୁସନ୍ଧାନରେ ତୀକ୍ଷ୍ଣ ଦୃଷ୍ଟି ରଖିବାକୁ ଲାଗିଲେ । ଏପରି ସମୟରେ ମହାରାଜା ମଞ୍ଚାରୁ ଅବତରଣ କରିବାକୁ ଲାଗିଲେ । ରାଧୁ ମନା କରୁଥାଏ, ଏପରି ସମୟରେ ଓହ୍ଲାଇବା ଉଚିତ ହେଉ ନାହିଁ, ବିପଦ ଥାଇ ପାରେ । ରାଧୁର ପ୍ରାର୍ଥନା ବୃଥା ହେଲା, ମହାରାଜା ତଳକୁ ଖସିବାକୁ ଲାଗିଲେ । ରାଧୁ ଅଗତ୍ୟା ପଛେ ପଛେ ଓହ୍ଲାଇଲା । ସେ ସମୟରେ ଶ୍ରୀରାମଚନ୍ଦ୍ର ଗାଢ଼ କଳା ରଙ୍ଗର

ପୋଷାକ ପିନ୍ଧି ଥାଆନ୍ତି । ଅନ୍ୟ ମଞ୍ଚାରେ ଥିବା ଶିକାରୀମାନେ କଳା ପୋଷାକ-ପରିହିତ ମହାରାଜାଙ୍କୁ ସେହି ଆହତ ଭାଲୁ ମନେ କରି ବନ୍ଧୁକରେ ଗୁଳି କରିବାକୁ ଲାଗିଲେ । ପ୍ରଥମେ ରାଧୁର ଅଣ୍ଟାରେ ଗୁଳି ଫୁଟିଗଲା । କରୁଣ ସ୍ୱରରେ ରାଧୁ ଚିତ୍କାର କରିବାକୁ ଲାଗିଲା । ମହାରାଜା ଏହି ଚିତ୍କାରର କାରଣ ଅନୁସନ୍ଧାନ କରିବା ସଙ୍ଗେ ସଙ୍ଗେ ଆଉ ଗୋଟିଏ ଗୁଳି ଆସି ତାଙ୍କ ନିକଟବର୍ତ୍ତୀ ଗୋଟିଏ ବୃକ୍ଷ ବିଦ୍ଧ କଲା ଏବଂ ଶ୍ରୀରାମଚନ୍ଦ୍ରଙ୍କ ଦୁଇ ହାତ ଓ ଛାତି ଛିନ୍ନଭିନ୍ନ ହୋଇଗଲା । କଷ୍ଟଦାୟକ ଭୀଷଣ ପୀଡ଼ାରେ ସେ କ୍ଷଣକାଳ ସ୍ତମ୍ଭୀଭୂତ ହୋଇଗଲେ । ରାଧୁର ଚିତ୍କାର ଶୁଣି କେତେକ ଲୋକ ଆସି ତାକୁ ଶୁଶ୍ରୂଷା କରିବାକୁ ଲାଗିଲେ । ମହାରାଜାଙ୍କୁ ରକ୍ତାକ୍ତ କଳେବର ଦେଖି ସମସ୍ତେ ବ୍ୟଥିତ ହୋଇଗଲେ । ଡାକ୍ତର ଅଣାଇବା ପାଇଁ ଖବର ପଠାଗଲା । ରାଧୁକୁ ଛାଡ଼ି ଦେଇ ସମସ୍ତେ ମହାରାଜାଙ୍କୁ ଘେରିଗଲେ । ଅସାଧାରଣ ଧୈର୍ଯ୍ୟଶୀଳ ଶ୍ରୀରାମଚନ୍ଦ୍ର କହୁଥାଆନ୍ତି—"ଏପରି କାହିଁକି ହେଉଛ ? ରାଧୁକୁ ଦେଖ, ତାର ଆଘାତ କିପରି ହୋଇଛି ?" ଯନ୍ତ୍ରଣାରେ ଦେହ ମନ ଛଟପଟ ହେଉଅଛି, ସେଥିପ୍ରତି ଭ୍ରୂକ୍ଷେପ ନାହିଁ, ରାଧୁ କିପରି ଅଛି, ଅନୁସନ୍ଧାନ ! ଦେହ ସଙ୍ଗେ ଆତ୍ମାର ବିଚ୍ଛେଦ-ଜ୍ଞାପକ ମୃତ୍ୟୁକୁ ସମ୍ମୁଖରେ ଦେଖି ଅଶେଷ ମୃତ୍ୟୁଯନ୍ତ୍ରଣା ଅକାତରେ ଫିଙ୍ଗି ଦେଇ, ରାଧୁର ଅବସ୍ଥା ବିଷୟରେ ପ୍ରଶ୍ନ ! ଏ କଣ ସାଧାରଣ ମନୁଷ୍ୟ ପକ୍ଷରେ ସମ୍ଭବ ?

ବାରିପଦାର ଅବସ୍ଥା କ୍ଷଣକେ ଭିନ୍ନ ଆକାର ଧାରଣ କଲା । କିଏ ହାଟ ବଜାର କରୁଥିଲା, କେଉଁଠାରେ ଲୋକେ ପଞ୍ଚା ପଞ୍ଚା ହୋଇ ବସି ଗପ କରୁଥିଲେ, କିଏ ବୁଲି ବାହାରିଅଛି, ଘରେ ବାହାରେ ଦୀପ ଲାଗି ଗଲାଣି । ହଠାତ୍ ଦେଖାଗଲା, ଲାଲ ସାହେବ ଗିରିଶଚନ୍ଦ୍ର ଭଞ୍ଜ ଦେଓଙ୍କ ମଟରକାର୍ ତୀର ବେଗରେ ଛୁଟି ଆସି ଅଟକିଗଲା । ଲାଲ ସାହେବଙ୍କ ମୁହଁ ଶୁଷ୍କ, ପାଟିରୁ କଥା ବାହାରୁ ନ ଥାଏ । ଅସ୍ତେ ଅସ୍ତେ

ସମସ୍ତ ସମାଚାର କହି ଡାକ୍ତରଙ୍କୁ ମଟରରେ ବସାଇ ଜଙ୍ଗଲ ଅଞ୍ଚଳକୁ ଫେରିଗଲେ । କ୍ଷଣକେ ଏ ଦୁର୍ଘଟନାର ଖବର ବାରିପଦା ତମାମ ବ୍ୟାପିଗଲା । ଲୋକେ ଭୟତ୍ରସ୍ତ ହୋଇ ପଚରା ପଚରି ହେଲେ । କେତେକ ଖବର ଶୁଣିଅଛନ୍ତି, ଅନେକେ କିଛି ଜାଣି ନାହାନ୍ତି । ସମସ୍ତେ ପାଗଳ ପରି ରେଲ ଷ୍ଟେସନ ଅଞ୍ଚଳକୁ ଧାଇଁବାକୁ ଲାଗିଲେ । ଆବାଳବୃଦ୍ଧବନିତା ଦେବାନଙ୍କ ଘର ଚାରିପାଖ ବେଢ଼ି ଠିଆ ହୋଇଥାଆନ୍ତି । କିଏ କାନ୍ଦୁଥାଏ, କିଏ ଊର୍ଦ୍ଧ୍ୱକୁ ଚାହିଁ ଜଗତ୍‌ପିତାଙ୍କୁ ମହାରାଜାଙ୍କ କଲ୍ୟାଣ ଭିକ୍ଷା କରୁଥାଏ । ଦେବାନ ସ୍ଥିର ରହି ପାରିଲେ ନାହିଁ, ମଟରରେ ଚଢ଼ି ଚାରିଆଡ଼େ ଖବର ପ୍ରଚାର କରି ଦେଲେ ଯେ, ମହାରାଜାଙ୍କ ଶରୀର ସୁସ୍ଥ ଅଛି; ସେ ବେଲ-ଘରିଆ ନଅରକୁ ଗାଡ଼ିରେ ଆସୁଛନ୍ତି । ଏ ଖବର ପାଇ ଅନେକେ ଟିକିଏ ଆଶ୍ୱସ୍ତ ହେଲେ, ମାତ୍ର ସେ ରାତିରେ କେହି ଶାନ୍ତିରେ ନିଦ୍ରା ଯାଇ ପାରି ନ ଥିଲେ ।

ବାଲେଶ୍ୱରରୁ ବଡ଼ ଡାକ୍ତର ଅଣାଗଲା । ପରଦିନ ସକାଳେ ଲୋକେ ଶୁଣି ସ୍ଥିର ହେଲେ ଯେ, ମହାରାଜାଙ୍କ ଆଘାତ ଗୁରୁତର ନୁହେଁ, ଭଲ ହୋଇଯିବେ । ରାଧୁର ଆଘାତ ଗୁରୁତର, ସେ ସେହିଦିନ ସକାଳେ କାଳ-ଗ୍ରାସରେ ପତିତ ହେଲା । ଜୀବନର ପ୍ରଧାନ ସଙ୍ଗୀ ବିଶ୍ୱସ୍ତ ଭୃତ୍ୟ ରାଧୁର ମୃତ୍ୟୁସମ୍ବାଦ ମହାରାଜାଙ୍କୁ ବ୍ୟଥିତ କଲା । ମାତ୍ର ତାଙ୍କ ପରି ସ୍ଥିତଧୀ ବ୍ୟକ୍ତି ଅଳ୍ପକେ ଆତ୍ମସମ୍ବରଣ କରିନେଲେ ।

ଶ୍ରୀରାମଚନ୍ଦ୍ରଙ୍କ ଅବସ୍ଥା ଭଲ ଅଛି, ଅଳ୍ପ ଦିନ ମଧ୍ୟରେ ସେ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରିବେ, ଡାକ୍ତରମାନେ ଏହି ମତ ଦେଇଥିଲେ । ବାସ୍ତବିକ ସେ ଦିନକୁଦିନ ଆରୋଗ୍ୟପଥରେ ଅଗ୍ରସର ହେବାର ଦେଖା-ଗଲା । କ୍ରମେ ସୁସ୍ଥ ହୋଇ ଚାଲି ବୁଲି ମଧ୍ୟ କରି ପାରିଲେ । ମେଘାସନ ପର୍ବତ ଉପରେ ଘର ତୋଳାଇ ଗ୍ରୀଷ୍ମାବାସର ଉପଯୋଗୀ କରିବାର

ବାସନା ଅନେକ ଦିନୁଁ ତାଙ୍କୁ ସ୍ପର୍ଶ କରିଥିଲା । ସେହି ସମୟରେ ନୂଆ ବିହାର-ଓଡ଼ିଶା ପ୍ରଦେଶ ସୃଷ୍ଟି ହୋଇ ବଙ୍ଗ ପ୍ରଦେଶରୁ ଅଲଗା ହେବାର ସ୍ଥିର ହୋଇଥାଏ । ନୂଆ ପ୍ରଦେଶର ନୂଆ ଲାଟଙ୍କ ଗ୍ରୀଷ୍ମାବାସର ଉପଯୁକ୍ତ ସ୍ଥାନ ବିହାର-ଓଡ଼ିଶା ପ୍ରଦେଶ ମଧ୍ୟରେ ଦୁଷ୍ପ୍ରାପ୍ୟ । ମହାରାଜାଙ୍କ ଇଚ୍ଛା ଥିଲା, ମେଘାସନ ପର୍ବତ ଉପରକୁ ବାସୋପଯୋଗୀ କରି ପାରିଲେ ତାହା ଲାଟଙ୍କ ଗ୍ରୀଷ୍ମାବାସର ଉପଯୋଗୀ ହୁଅନ୍ତା । ଏହି ଉଦ୍ଦେଶ୍ୟରେ ଲେଖା ଲେଖି କରି ସେ ସରକାରଙ୍କ ମତ ନେଇଥିଲେ । ଶରୀର ଟିକିଏ ସୁସ୍ଥ ବୋଧ ହେବାରୁ ଜଣେ ବିଶିଷ୍ଟ ସରକାରୀ କର୍ମଚାରୀଙ୍କ ସଙ୍ଗେ ଏ ବିଷୟ ପରାମର୍ଶ କରିବା ନିମିତ୍ତ ସେ କଲିକତା ଯାତ୍ରା କଲେ ।

କାଳର ଗତି ବିଚିତ୍ର ! କଲିକତାଠାରେ ବୈଦ୍ୟୁତିକ ଅଲୋକ ପରୀକ୍ଷାରେ (X. Ray) ତାଙ୍କ ହାତ ଓ କ୍ଷତ ପରୀକ୍ଷା କରାଗଲା । ଉକ୍ତ ସ୍ଥାନରେ ଗୁଳିର କେତେକ ଅଂଶ ରହିଯାଇଥିବାର ଦେଖାଗଲା ।

ଡାକ୍ତରମାନେ ମତ ଦେଲେ—ଅସ୍ତ୍ରଚିକିତ୍ସା କରି ଗୁଳିର ଅଂଶ ଶରୀରରୁ ବାହାର କରିବାକୁ ହେବ, ନଚେତ୍ ଭବିଷ୍ୟତରେ ବିପଦର ସମ୍ଭାବନା । ଅଗତ୍ୟା ସୁସ୍ଥ ଶରୀରରେ ଅସ୍ତ୍ରଚାଳନା କରାଗଲା । ଗୁଳିର ଅଂଶ ମଧ୍ୟ ଶରୀରରୁ ବାହାର କରି ଦିଆଗଲା । ଶରୀରକୁ ଭବିଷ୍ୟତ୍ ବିପଦରୁ ରକ୍ଷା କରିବା ନିମିତ୍ତ ମନୁଷ୍ୟବୁଦ୍ଧିରେ ଯାହା ଆବଶ୍ୟକ ମନେ ହେଲା, ସବୁ କରାଗଲା । ମାତ୍ର ମନୁଷ୍ୟର ଜ୍ଞାନ ବୁଦ୍ଧି ସବୁ ଯେ ଅତି ସୀମାବଦ୍ଧ ! ସର୍ବନିୟନ୍ତାଙ୍କ ଇଚ୍ଛା ଅନ୍ୟ ପ୍ରକାର, ମନୁଷ୍ୟ ସ୍ଥିର କଅଣ କରିପାରେ ?

ଅସ୍ତ୍ରଚିକିତ୍ସା ହେବା ପରେ ଦେଖାଗଲା ମହାରାଜାଙ୍କ ରକ୍ତ ବିଷାକ୍ତ ହୋଇ ଯାଇଅଛି । ସବୁ ପ୍ରକାର ସାବଧାନତା ଅବଲମ୍ବନ ସତ୍ତ୍ୱେ ଏପରି

ହେଲା, ମୃତ୍ୟୁ କାହାର ? ଡାକ୍ତରମାନେ ହତାଶ ହୋଇ ପଡ଼ିଲେ । ଯଥାସାଧ୍ୟ ଚିକିତ୍ସା ଆରମ୍ଭ ହେଲା, ମାତ୍ର କାହିଁରେ କିଛି ହେଲା ନାହିଁ । କ୍ରମେ ରୋଗ ପ୍ରବଳ ହେଲା ।

୧୯୧୨ ମସିହା ଫେବ୍ରୁଆରୀ ମାସ ୨୨ ତାରିଖ ସକାଳେ ୪୦ବର୍ଷ ବୟସରେ ଦେଶବାସୀ,ପ୍ରଜା ଓ ଆତ୍ମୀୟ ସ୍ୱଜନମାନଙ୍କୁ ଶୋକସାଗରରେ ଭସାଇ ଦେଇ ମହାରାଜା ଶ୍ରୀରାମଚନ୍ଦ୍ର ଇହଲୀଳା ସାଙ୍ଗ କଲେ । କର୍ମବୀର ବୀର ପରି ମୃତ୍ୟୁକୁ ମଧ୍ୟ ଆଲିଙ୍ଗନ କରିଥିଲେ । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କର ଜ୍ଞାନ ଲୁପ୍ତ ହୋଇ ନ ଥିଲା । ମୃତ୍ୟୁର କେତେକ ମିନିଟ ପୂର୍ବରୁ ଦେବାନ୍ ତାଙ୍କୁ ଦେଖିବାକୁ ପାଇଥିଲେ । ପାଟିରୁ କଥା ବାହାରୁ ନ ଥାଏ, ତଥାପି ଦେବାନଙ୍କ ମୁହିଁ ହସିଲେ ।

ମୃତ୍ୟୁର କିଛିକ୍ଷଣ ପୂର୍ବେ, ଯେତେବେଳେ ତାଙ୍କ ପତ୍ନୀ ଶୋକାକୁଳ ନୟନରେ ଚାହିଁ ରହିଥିଲେ, ସେତେବେଳେ ସେ କହିଥିଲେ —"ଶୋକ ପରିତ୍ୟାଗ କର, ଅନନ୍ତ ଭୁବନରୁ ମୋ ନିକଟକୁ ଖବର ଆସୁଅଛି, ତୁମ୍ଭେ କଣ ଶୁଣି ପାରୁ ନାହଁ ?" ମୁହଁରେ ହସ, ଆଖି ବୁଜି ଶୋଇ ରହିଅଛନ୍ତି—ପିଣ୍ଡରେ ପ୍ରାଣ ନାହିଁ । ମୃତ୍ୟୁ ପୂର୍ବରୁ ଯେଉଁ ନିଦ୍ରା ଆସିଲା, ତହିଁରେ ସେ ଅମୃତ ସ୍ୱପ୍ନ ଦେଖିବାକୁ ପାଇଲେ—ତାଙ୍କର ଆତ୍ମା ଅନନ୍ତ ସୁଖ ଶାନ୍ତି ଉପଭୋଗ କରିବାକୁ ଲାଗିଲା ।

ଏ ଦାରୁଣ ମୃତ୍ୟୁସମ୍ବାଦ ଶୁଣି ଭକ୍ତକବି ଗାଇ ଗଲେ—

"ଭଞ୍ଜ ଭୂମିପତି ଶ୍ରୀରାମଚନ୍ଦ୍ର
କୋଟି ହୃଦାକାଶ- ପୂର୍ଣ୍ଣିମାଚନ୍ଦ୍ର,

କୋଟି ହୃଦୟର ଆଶା-ଆସ୍ପଦ,
ଜୀବଜଗତର ଯଥା ଜଳଦ
କାହିଁ ଗଲେ ମହାବାହୁ ?
ଅକାଳେ ଅକାଣ୍ଡେ ଦୈବ ଦୁର୍ବିପାକେ
ବଧୂକୁ ଗ୍ରାସିଲା ରାହୁ ।

× × × ×

"କେମନ୍ତେ ହରିଲୁ ସେହି ପ୍ରତିଭା
ପ୍ରସନ୍ନ ନିର୍ମଳ ସ୍ୱର୍ଗୀୟ ବିଭା,
ବିଜ୍ଞାନ ଦର୍ଶନ କଳା ସକଳେ
ନବଯୁଗୋଚିତ କର୍ମକୌଶଳେ
ଅବାରିତ ଯାର ଗତି,
ଉଇଁ ଆସିଥିଲା ଉଜ୍ଜ୍ୱଳ ଉଦୟ—
ଗିରି ଶିରେ ଯାର ଜ୍ୟୋତି ।

× × × ×

"କେଣେ ନେଇଗଲୁ ନବ ଯୁଗର
ନୃପତିସତ୍ତମ ପ୍ରଜା କୋୟୂର ?
ରାଜ୍ୟର କଲ୍ୟାଣ ନିତ୍ୟ ନିରତ,
ପ୍ରଜାହିତ ଯାର ନିୟୁତ ବ୍ରତ,
ରାଜର୍ଷି ରାଜ୍ୟାଶ୍ରମେ,
ରାମ ରାଜ୍ୟ ବୋଲି ପ୍ରଶସ୍ତି ଲଭିଲା
ଯାର ରାଜ୍ୟ ସୁନୟମେ ।

× × × ×

'ଯଥାକାଳେ ପୁଣି ଯଥା ବିଧାନେ
ବିଧିର ମଙ୍ଗଳ— ପୂତ ଅହ୍ୱାନେ

ଭବବାସୁଁ ଭଞ୍ଜ ଦେବ ଶ୍ରୀରାମ
ଯାଇଛନ୍ତି ଚାଲି ଅମର ଧାମ
ଭଣି ଏ ଅମୃତ ବାଣୀ,
ତାଙ୍କ ଆତ୍ମାଙ୍କ କେନ୍ଦ୍ର ନିକେତନ୍
ପାଉଅଛି ଏବେ ଜାଣି ।"

× × × × ×

ଏ ନିଦାରୁଣ ସମ୍ବାଦ ଚାରିଆଡ଼େ ବ୍ୟାପିଯିବାକୁ ଲାଗିଲା । ଏ ସମ୍ବାଦରେ ମୟୂରଭଞ୍ଜ ମ୍ରିୟମାଣ, କାତର ହୋଇଗଲା । ରାଜପରିବାର ଶୋକରେ ଭାସିଲେ । ପ୍ରଜାମାନେ ନୀରବରେ ଅଶ୍ରୁ ବିସର୍ଜନ କଲେ । ସମଗ୍ର ଉତ୍କଳରେ ଏ ବିଷାଦବାର୍ତ୍ତା ଗମ୍ଭୀର ଶୋକ ଆଣିଲା । ସ୍କୁଲ, କଲେଜ ବନ୍ଦ ହୋଇଗଲା । ଚାରିଆଡ଼େ ସଭା ସମିତି ହୋଇ ଶୋକ-ଦୁଃଖପୂର୍ଣ୍ଣ ନିର୍ଦ୍ଧାରଣମାନ ରାଜପରିବାର ନିକଟକୁ ପଠାଗଲା ଖବରକାଗଜଯାକ ଗମ୍ଭୀର ଦୁଃଖ ପ୍ରକାଶ କରିବାକୁ ଲାଗିଲେ ।

ଉପାୟ ନାହିଁ—ମୃତ୍ୟୁ କାହାରି କଥା ଶୁଣେ ନାହିଁ । ସେ ତାର କାର୍ଯ୍ୟ କରି ଚାଲିଯାଏ । ଯାହାର ପ୍ରତିକାର ମନୁଷ୍ୟ କ୍ଷମତାର ବହିର୍ଭୂତ, ଅଗତ୍ୟା ତାକୁ ସହିବାକୁ ହେବ । ଏ ଘଟଣା ଯେତେ ନିଦାରୁଣ ହେଲେ ସୁଦ୍ଧା, ଏହା ଦ୍ୱାରା ରାଜ୍ୟର, ଜାତିର ଯେତେ କ୍ଷତି ହେଲେ ମଧ୍ୟ, ତାଙ୍କୁ ଆଉ ଫେରାଇ ଆଣିବାର ଉପାୟ ନାହିଁ ! ଚିରଦିନ ପାଇଁ ଓଡ଼ିଶାର ଆଦର୍ଶ ରାଜା ଶ୍ରୀରାମଚନ୍ଦ୍ର ଦେଶ ଛାଡ଼ି, ସଂସାର ଛାଡ଼ି ଚାଲି ଯାଇଅଛନ୍ତି ।

ନିକେ ଭାରତସମ୍ରାଟ୍ ଏ ଘଟନା ଶୁଣି ଜଣାଇଲେ—"ମୟୂରଭଞ୍ଜ ମହାରାଜାଙ୍କ ଆକସ୍ମିକ ମୃତ୍ୟୁରେ ଆମ୍ଭେ ଓ ସାମ୍ରାଜ୍ଞୀ ଉଭୟେ ମର୍ମାହତ ହୋଇଅଛୁଁ । ମୟୂରଭଞ୍ଜର ମହାରାଣୀଙ୍କୁ ଆମ୍ଭମାନଙ୍କର ଆନ୍ତରିକ

ସମବେଦନା ଜ୍ଞାପନ କରୁଅଛୁଁ । କଲିକତା ମଇଦାନରେ ଯେଉଁ ସମାବେଶ ହୋଇଥିଲା, ସେଥିରେ ମହାରାଜାଙ୍କ କୃତିତ୍ୱ ମନେ ପଡ଼ୁଅଛି । ଯଥାର୍ଥରେ ଆମ୍ଭେମାନେ ସେ ସମୟରେ ତାଙ୍କୁ ଦେଖି ପୁଲକିତ ହୋଇଥିଲୁଁ ।”

କଲିକତାର “ଓଡ଼ିଆ ଇଉନିଅନ୍” ମହାରାଜାଙ୍କ ମୃତ୍ୟୁରେ ଯେଉଁ ଶୋକସଭାର ଅନୁଷ୍ଠାନ କରିଥିଲେ, ତହିଁରେ କବି ଶ୍ରୀ ପଦ୍ମଚରଣ ପଟ୍ଟନାୟକ ବଡ଼ ଦୁଃଖରେ ଗାଇଥିଲେ—

## ଅଶ୍ରୁକଣା

୧

“କାହିଁ କେଉଁ ଦେଶୁ ଆସି ସରଗ ଦେବତା
ହସି ହସି ମୋ ଦୁଆରେ କହୁଥିଲା କଥା ।
ପ୍ରାଣେ ରଖି ପ୍ରାଣକଥା ଗଲା କାହିଁ ଚାଲି ।
ଯାବତ ଜୀବନ ଥିବ ତାର ଗୁଣ ଭାଳି ।

୨

“ଦେଖିଛୁ ସରଗ ଆଭା ତାହାର ବଦନେ,
ଶୁଣିଛୁ ସରଗ ବାଣୀ ତା ମଧୁ ବଚନେ,
ସେ ବଦନ ସେ ବଚନ ଆଜ ନାହିଁ କାହିଁ,
କି ଶୁଭ ସାଧ ହେ ପ୍ରଭୁ ଏ ସବୁ ଭିଆଇ !

୩

“ମେଘାସନ ମଞ୍ଜୁକୁଞ୍ଜେ ସ୍ୱର୍ଗଦୂତ ବସି
କେତେ ସ୍ୱର୍ଗ ସମାଚାର ଭାଷିଲା ରହସି;

ରହିଅଛି ଭୂଞ୍ଜ, କାହିଁ ଭୂଞ୍ଜର ଦେବତା !
ଅକାଳରେ ଗଲ୍ପ ମନେ ରଖି ମନ କଥା ।

୪

"ପ୍ରାଚୀ ନଭେଁ ଉଠି ଅସୁଥିଲ୍ପ ଦିବାକର,
କେତେ ପ୍ରାଣେ ଜାଗିଥିଲ୍ପ କେତେ ଆଶା ବଳ ।
କାହିଁ କେଉଁ ଦେଶେ ତାର ହେଲ୍ପ ନିମନ୍ତ୍ରଣ,
ମୃତ ପର ଭୂବ ହୋଇ କରିଲ୍ପ ଗମନ ।

୫

"ଥରେ ହେଲେ କହିଥାନ୍ତା ତା ପ୍ରାଣବାସନା ?
କହିଥାନ୍ତା ଥିଲ୍ପ କିବା ମରମ ବେଦନା !
ବାସନା କାମନା ଆଶା ସବୁ ହୃଦେ ଭରି
ହସି ହସି କେଉଁ ଦେଶେ ଗଲ୍ପ ଆହା ଚଳି !

୬

"କିବା ମହାଯଜ୍ଞ ପାଇଁ କେତେ ଆୟୋଜନ
କରୁଥିଲ୍ପ ସେହୁ ସହି ଅଶେଷ କଷଣ;
ରହିଅଛି ଯଜ୍ଞବେଦ, ଯଜ୍ଞର ସମ୍ଭାର
କାହିଁ ହୋତା, କିଏ କଲ୍ପ ଏତେ ନାରଖାର ?

୭

"କାହିଁ କେଉଁ ନନ୍ଦନରେ ଥିଲ୍ପ ଫୁଲ ଜଣା,
ନେଲ୍ପ ଏ ଫୁଲଟି କିଏ ନ ବହି କରୁଣା ?
ମୋ ଦରିଦ୍ର ଉଦ୍ୟାନର ଗଲ୍ପ ଶିରୀ ସରି,
ହେ ଦୁରନ୍ତ ଦସ୍ୟୁ ତୋର କିବା ସୁଖ ହରି ?

୮

"ମୋ ଦରିଦ୍ର କଣ୍ଠେ ଥିଲା ଯାନ ହେମମାଳା,
ମୋ ତପ୍ତ ହୃଦୟଦେଶେ ଯାଣ ପୁଣ୍ୟଧାର,
କାହିଁ ଗଲା ମାଳା ଧାର ରହିବ କପର ?
ହେଉ ତବ ଇଚ୍ଛା ପୂର୍ଣ୍ଣ ଦୟାଳୁ ଶ୍ରୀହର ।



# ଦଶମ ଅଧ୍ୟାୟ



## ଗୁଣାବଳୀ

ମହାରାଜା ଶ୍ରୀ ରାମଚନ୍ଦ୍ରଙ୍କ ଚରିତ୍ର ଯେ କୌଣସି ଜାତି ପକ୍ଷରେ ଆଦର୍ଶସ୍ଥାନୀୟ । ରାଜକୁଳରେ ଜନ୍ମଗ୍ରହଣ କରି, ଗୋଟିଏ ପ୍ରଧାନ ରାଜ୍ୟର ଶାସନକର୍ତ୍ତା ହୋଇ ସେ ଯେପରି ଅଧ୍ୟବସାୟ, ନମ୍ରତା, ଶୁଦ୍ଧ ସ୍ୱଭାବ ଚରିତ୍ର ଦେଖାଇ ଯାଇଅଛନ୍ତି, ତାହା ଅନୁଧ୍ୟାନ କରିବା ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ । କାର୍ଯ୍ୟରେ, ବ୍ୟବହାରରେ ଏତେ ନିରାଡ଼ମ୍ବର, ମଧୁର ସ୍ୱଭାବ, ରାଜା ମହାରାଜାଙ୍କ କଥା ତ ବହୁଦୂରରେ, ସାଧାରଣ ଭଦ୍ରବ୍ୟକ୍ତିମାନଙ୍କଠାରେ ମଧ୍ୟ କ୍ୱଚିତ୍ ଦେଖାଯାଏ । ଏତେ ପାଣ୍ଡିତ୍ୟ, ଏତେ କାର୍ଯ୍ୟଦକ୍ଷତାର ଅଧିକାରୀ ହୋଇ ସୁଦ୍ଧା ମୁହୂର୍ତ୍ତିକ ପାଇଁ ସେ ନିଜର ବଡ଼ିମା ଦେଖାଇ ନାହାନ୍ତି । ସବୁବେଳେ ନିଜର ଦୁର୍ବଳତା ଓ ଅଳ୍ପତା ଅନୁଭବ କରି କାହାରି ପ୍ରତି କୌଣସି ପ୍ରକାର ଉଗ୍ର ବ୍ୟବହାର କରିବାର ଅବସର ସେ ପାଇ ପାରି ନାହାନ୍ତି ।

ଶ୍ରୀରାମଚନ୍ଦ୍ର ବାସ୍ତବିକ ରାଜର୍ଷି ଥିଲେ । ପ୍ରଜାମାନଙ୍କ ମଙ୍ଗଳ ନିମିତ୍ତ ଉତ୍ସୃଷ୍ଟ ହୋଇ ସେ ଧନ୍ୟ ହୋଇଅଛନ୍ତି । କେବଳ ତାଙ୍କର କାର୍ଯ୍ୟଦକ୍ଷତା ମୟୂରଭଞ୍ଜକୁ ଭାରତରେ ସୁଶାସିତ ରାଜ୍ୟ ବୋଲି ପରିଚିତ କରାଇ ପାରିଅଛି । କୋଡ଼ିଏ ବର୍ଷ ଗୋଟିଏ ଜାତି ବା ରାଜ୍ୟ ପକ୍ଷରେ କିଛି ନୁହେଁ । ଏହି ଅଳ୍ପ ସମୟ ମଧ୍ୟରେ ରାଜ୍ୟକୁ, ତଥା ପ୍ରଜାମାନଙ୍କୁ ଯେଉଁ ଅବସ୍ଥାକୁ ସେ ଉଠାଇ ଆଣି ପାରିଥିଲେ, ଭାବିଲେ ବିସ୍ମୟାଭିଭୂତ ହେବାକୁ ହୁଏ । ଏହି ସମୟର ଏପରି କୌଣସି ଏକ ମୁହୂର୍ତ୍ତ ଯାଇ ନାହିଁ, ଯେଉଁ ସମୟରେ ରାଜ୍ୟର ଉନ୍ନତି ବିଷୟରେ ସେ ଆଦୌ ଚିନ୍ତା କରି ନାହାନ୍ତି । ତାଙ୍କ ଚରିତ୍ରର ପ୍ରଧାନ ମହତ୍ତ୍ୱ ଏବଂ ବିଶେଷତ୍ୱ ଏହି, ଯେ ତାଙ୍କ ସଂସ୍ପର୍ଶରେ ଥରେ ମାତ୍ର ଆସିବାର ସୁଯୋଗ ପାଇଅଛି, ତାଙ୍କ ମଧୁର ମୂର୍ତ୍ତି ଓ ସ୍ୱଭାବରେ ସେ ତାଙ୍କୁ ଚିରଦିନ ପାଇଁ କିଣି ନେଇଅଛନ୍ତି ।

ଭୋଗ ବିଳାସ ମଧ୍ୟରେ ଜନ୍ମଗ୍ରହଣ କରି ଓ ପ୍ରତିପାଳିତ ହୋଇ, ଅସଂଯତ ପାରିପାର୍ଶ୍ୱିକ ଅବସ୍ଥା ମଧ୍ୟରେ ଅନାସକ୍ତଭାବରେ ଦଣ୍ଡାୟମାନ ହେବା ପ୍ରଚୁର ମାନସିକ ବୀରତ୍ୱର ପରିଚାୟକ । ଶୈଶବାବସ୍ଥାରୁ ସଂଯମ ଅଭ୍ୟାସଦ୍ୱାରା ତାଙ୍କର ଚିତ୍ତବୃତ୍ତି ଶୁଦ୍ଧ ନିର୍ମଳ ହୋଇ ଯାଇଥିଲା । ପ୍ରଗାଢ଼ ଈଶ୍ୱରବିଶ୍ୱାସ ତାଙ୍କୁ ଜୀବନପଥର ସ୍ଖଳନରୁ ପଦେ ପଦେ ରକ୍ଷା କରିଥିଲା । ସନ୍ନ୍ୟାସଗ୍ରହଣ କରି ବନଗମନ କରିବା ଅପେକ୍ଷାକୃତ ସହଜସାଧ୍ୟ, ମାତ୍ର ମହାରାଜା ହୋଇ, ଏତେ ବିଭିନ୍ନ ଧରଣର ଲୋକମାନଙ୍କ ସଙ୍ଗେ ବ୍ୟବହାର କରି, ପଦେ ପଦେ ସ୍ଖଳନରୁ ନିଜକୁ ଉତ୍ତୀର୍ଣ୍ଣ କରିଥିବାରୁ ସେ ଆଜି ଆମ୍ଭମାନଙ୍କର ପୂଜାର ପାତ୍ର ହୋଇଅଛନ୍ତି । ମହାରାଜାଙ୍କ ଚରିତ୍ରର ଏହି ମହତ୍ତ୍ୱ ଅନନ୍ୟସାଧାରଣ ।

ତାଙ୍କ ସ୍ୱଭାବ ଚରିତ୍ର ଏଡ଼େ ମଧୁମୟ ଓ ବ୍ୟବହାରରେ ସେ ଏଡ଼େ ବିନୟୀ ଯେ, ତାଙ୍କ ସଙ୍ଗେ କଥାବାର୍ତ୍ତା କଲାବେଳେ, ମନେମାନେ

ସମ୍ମୁଖରେ ଅଗ୍ରର ବ୍ୟବହାରରେ ଯେପରି କଠକଣା ଦରକାର, ତାହା ଭୁଲି ଯିବାକୁ ହେଉଥିଲା । ନିତାନ୍ତ ଗରିବ ପ୍ରଜା ମଧ୍ୟ ଇଚ୍ଛା କଲେ ତାଙ୍କ ସଙ୍ଗେ ଦେଖା ସାକ୍ଷାତ୍ କରି ନିଜର ଗୁହାରି ଜଣାଇ ପାରୁଥିଲା । ବ୍ୟବହାରରେ ଗର୍ବ କି ପଦାର୍ଥ, ସେ ଏକାବେଳକେ ଭୁଲି ଯାଇଥିଲେ ।

ସୁସଂଯତ ନୈତିକ ଶୃଙ୍ଖଳାରେ ସେ ନିଜର ଚାଲି ଚଳନ ଓ ବ୍ୟବହାରକୁ ଏପରି ଆବଦ୍ଧ କରି ପାରିଥିଲେ ଯେ, ତାହା ଭାବିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ମୟୂରଭଞ୍ଜର ଦେବାନ୍ ଦିନେ କହିଥିଲେ- "ମୁଁ ମହାରାଜାଙ୍କୁ ଚବିଶ ବର୍ଷ କାଳ ଜାଣେ; କିନ୍ତୁ ଏତେ ଦୀର୍ଘକାଳ ମଧ୍ୟରେ ସେ କେବେ ଥରେ ରାଗିବାର ମୋତେ ଜଣା ନାହିଁ ।"

ଚାକରବାକରମାନଙ୍କ ପ୍ରତି ବ୍ୟବହାରରୁ ମନୁଷ୍ୟର ଅଭ୍ୟନ୍ତରୀଣ ପ୍ରବୃତ୍ତିର ପରିଚୟ ମିଳେ । ସମାଲୋଚନା ଭୟରୁ କେହି କେହି ବାହାର ଲୋକଙ୍କ ସଙ୍ଗେ ଭଦ୍ର ବ୍ୟବହାର କରିଥାଆନ୍ତି, ମାତ୍ର ଚାକରମାନଙ୍କ ନିକଟରେ ନିଜର ପ୍ରକୃତି ଉଲଗ୍ନ ହୋଇ ଦେଖାଦିଏ । ମହାରାଜା ଥରେ ନିଜ ହାତରେ ଗୋଟିଏ ବ୍ୟାଗ୍ ଧରି ଚାଲିଅଛନ୍ତି, ଭୃତ୍ୟ ରଘୁ ଟିକିଏ ପଛରେ ଯାଉଅଛି । ଜଣେ ଏ ଘଟନା ଦେଖି ରଘୁକୁ କହିଲେ—"ଦେଖ ରଘୁ, ଶୀଘ୍ର ଯାଅ । ମହାରାଜା ତୁମ ଉପରେ ରାଗିବେଟି ।" ରଘୁ କହିଲା— "ମହାରାଜା ଆମର କେବେ ରାଗନ୍ତି ନାହିଁ । ମୁଁ ଶୋଇ ପଡ଼ିଥିବାବେଳେ ଦରକାର ପଡ଼ିଲେ ନିଜେ ଆସି ଧୀରେ ମୋତେ ଉଠାନ୍ତି । କେବେ ବଡ଼ ପାଟି କରି ମଧ୍ୟ ଡାକନ୍ତି ନାହିଁ ।"

ମହାରାଣୀ ଲକ୍ଷ୍ମୀକୁମାରୀ ଜୀବିତ ଥିବା ସମୟରେ ଥରେ ମହାରାଜା ଖାଇ ବସିଛନ୍ତି, ନ ଖାଇ ହଠାତ୍ କାହିଁକି ଉଠି ପଡ଼ିଲେ । ମହାରାଣୀ କାରଣ ପଚାରିବାରୁ କହିଲେ—"ତୁମେ ଯଦି କାହାରିକୁ ନ କହିବ, ତେବେ ମୁଁ କହିବି, ନଚେତ୍ କହିବି ନାହିଁ ।"

ମହାରାଣୀ ପ୍ରତିଶ୍ରୁତ ହେଲେ । ତତ୍ପରେ ମହାରାଜା ଭାତ ମଧ୍ୟରୁ ଗୋଟିଏ ମଲ୍ଲ ଅସରପା କାଢ଼ି ଦେଖାଇ ଦେଲେ ଏବଂ ଉପବାସରେ ଯାଇ କଚେରୀ କାର୍ଯ୍ୟ ବୁଝା ସୁଝା କଲେ । ମହାରାଣୀ ବଡ଼ ଦୁଃଖିତ ହେଲେ । ପାଚକକୁ ଡକାଇ ଅଣି ଭବିଷ୍ୟତକୁ ବିଶେଷ ସାବଧାନ ହେବା ନିମିତ୍ତ ତାକଦ୍ କରି ଦେଲେ । ଭୟ ଓ ଲଜ୍ଜାରେ ବିବ୍ରତ ହୋଇ ପାଚକ ଯାଇ ହାତ ଯୋଡ଼ି ମହାରାଜାଙ୍କୁ ଜଣାଇଲା—"ମଣିମା, ଦୋଷ କ୍ଷମା ହେଉ ।"

ହସି ହସି ମହାରାଜା କହିବାକୁ ଲାଗିଲେ—"ତୁମେ ଏଠିକି କାହିଁକି ଆସିଲ ? ମୁଁ କଣ ତୁମ୍ଭଙ୍କୁ କିଛି କହୁଛି ? ଯାଅ, ସାବଧାନ ହୋଇ ନିଜ କାମ କର । ସମସ୍ତଙ୍କଠାରେ ତୁମ ପରି ସାମୟିକ ତ୍ରୁଟି ସମ୍ଭବ; ସେଥିପାଇଁ ଏତେ ଚିନ୍ତା କାହିଁକି ?

ସେ ଦିନ ରାତିରେ ଖାଇ ବସିବାବେଳେ ଶ୍ରୀରାମଚନ୍ଦ୍ର ପରିହାସରେ ମହାରାଣୀଙ୍କୁ କହିଲେ—"ସ୍ତ୍ରୀଲୋକମାନେ ପ୍ରତିଜ୍ଞା ରକ୍ଷା କରି ପାରନ୍ତି ନାହିଁ ।" ମହାରାଣୀ ଲଜ୍ଜିତା ହେଲେ ।

ଏତେ ଦୟାର୍ଦ୍ର ଓ ଉଦାରହୃଦୟ ହୋଇ ମଧ୍ୟ ସେ ଇଚ୍ଛାକୃତ ଦୋଷ ଦେଖିଲେ କାହାରିକୁ କ୍ଷମା ଦେଉ ନ ଥିଲେ । ବଡ଼ ବଡ଼ କର୍ମଚାରୀ-ମାନଙ୍କଠାରେ କେବେ କର୍ତ୍ତବ୍ୟରେ ତ୍ରୁଟି ପରିଲକ୍ଷିତ ହେଲେ, ସେ ଯଥାବିହିତ ଶାସ୍ତିବିଧାନରେ କୁଣ୍ଠିତ ହେଉ ନ ଥିଲେ । ଇଚ୍ଛାକୃତ ଓ ଅଜ୍ଞାତ ତ୍ରୁଟି ମଧ୍ୟରେ ପ୍ରଭେଦ ସେ ଭଲ ଭାବରେ ବୁଝିଥିଲେ । ତାଙ୍କ ନିଜ ସ୍ୱାଚ୍ଛନ୍ଦ୍ୟରେ ତ୍ରୁଟି ଓ ରାଜକାର୍ଯ୍ୟରେ ତ୍ରୁଟି ଏ ଦୁଇଟିରୁ ପ୍ରଥମଟିକୁ ସେ ତେତେ ଲକ୍ଷ୍ୟ କରୁ ନ ଥିଲେ; କିନ୍ତୁ ଦ୍ୱିତୀୟ ତ୍ରୁଟି ନିମିତ୍ତ ସେ ନିଜର ଆତ୍ମୀୟ ସ୍ୱଜନମାନଙ୍କୁ ମଧ୍ୟ କ୍ଷମା ନ ଦେଇ କଠୋର ମୂର୍ତ୍ତି ଧାରଣ କରୁଥିଲେ ।

ଥରେ ରାଜ ନଅରର ଜଣେ ଭୃତ୍ୟ ଫୌଜଦାରୀ ଆଇନ ଅନୁସାରେ କେତେ ଦିନ କାରାବାସ ଦଣ୍ଡ ପାଇଲା । ଷ୍ଟେଟ ବିଚାରପତି ଏ ଦଣ୍ଡ ବିଧାନ କରିଥିଲେ । ଚାକରଟି ଦଣ୍ଡିତ ହୋଇ ପୁଲିସ ଜିମା ଅଟକ ଥିଲା । ସେହି ଚାକର ରାଜପରିବାରର ଜଣେ ଶକ୍ତିଶାଳୀ ଓ ମହାରାଜାଙ୍କ ନିଜ ସମ୍ପର୍କୀୟଙ୍କର ପ୍ରୀତିପାତ୍ର ଥିଲା । ଦଣ୍ଡାଜ୍ଞା ଶୁଣି ପାରି ଉକ୍ତ ରାଜପୁରୁଷ ଭୃତ୍ୟଙ୍କର ରାଗି ଗଲେ ଏବଂ ଚାକରକୁ ଜବରଦସ୍ତି ପୁଲିସ ହାତରୁ ଛଡ଼ାଇ ଆଣି ମୁକ୍ତ କରିଦେଲେ । ମହାରାଜା ଏ ଘଟଣାର ବିବରଣ ଶୁଣି ପାରି ଉକ୍ତ ରାଜପୁରୁଷଙ୍କ ନାମରେ ମୋକଦ୍ଦମା କରିବା ନିମିତ୍ତ ଆଦେଶ ଦେଲେ—"ନ୍ୟାୟ ବିଚାରରେ ପାତ୍ରାପାତ୍ର ବିବେଚନା ହୋଇ ନ ପାରେ । ଆଇନ ଚକ୍ଷୁରେ ରାଜପୁରୁଷ ହୁଅନ୍ତୁ ବା ଗରିବ ପ୍ରଜା ହୁଅନ୍ତୁ, ସମସ୍ତେ ସମାନ ।"

ବିଚାରରେ ଉକ୍ତ ରାଜପୁରୁଷଙ୍କର ଶାସ୍ତି ବିଧାନ ହେଲା । ଏହି ନ୍ୟାୟ ବିଚାରରେ ସମସ୍ତେ ବୁଝିଲେ ଯେ, ଯେକେ କ୍ଷମତାଶାଳୀ ହେଲେ ମଧ୍ୟ ମୟୂରଭଞ୍ଜର ନ୍ୟାୟବିଚାର ତାଙ୍କ ପାଇଁ କଳୁଷିତ ହୋଇ ନ ପାରେ ।

ଏଡ଼େ ବଡ଼ ରାଜ୍ୟର ହର୍ତ୍ତା କର୍ତ୍ତା ହୋଇ ଓ ନିଜର ଉଦ୍ୟମରେ ରାଜ୍ୟର ଆୟ ଚତୁର୍ଗୁଣ ବୃଦ୍ଧି କରି ମଧ୍ୟ ସେ ନିଜର ଆରାମ ଓ ବିଳାସକୁ ରାଜ୍ୟ ତଥା ପ୍ରଜାଙ୍କ ଉନ୍ନତିର ଅନ୍ତରାୟ ମନେ କରି କୌଣସି କାର୍ଯ୍ୟ କରି ନାହାନ୍ତି; ବରଂ ନିଜର ବିଳାସ ପରିତ୍ୟାଗ କରି ରାଜ୍ୟର ଉନ୍ନତି କରିବାରେ ସେ ସର୍ବଦା ଚେଷ୍ଟିତ ଥିଲେ । ରାଜ ନଅରର ଗୋଟିଏ ସଂକୀର୍ଣ୍ଣ ଗୃହ ତାଙ୍କର ଶୟନ-କକ୍ଷ ଥିଲା । ଉକ୍ତ ଗୃହରେ ଯଥେଷ୍ଟ ବାୟୁ ଗମନାଗମନର ବନ୍ଦୋବସ୍ତ ମଧ୍ୟ ନ ଥିଲା । ଅନେକ ଦିନରୁ ତାଙ୍କ ନିଜ ବ୍ୟବହାର ନିମିତ୍ତ ଗୋଟିଏ ଆବାସ-ଭବନ ନିର୍ମାଣ

କରାଇବାର କଳ୍ପନା ହୋଇଥିଲା । ତଥାପି ପ୍ରତିବର୍ଷ ଆୟ ବ୍ୟୟର ହିସାବ ସ୍ଥିର କଲାବେଳେ ସେ ଏ କାର୍ଯ୍ୟ ସ୍ଥଗିତ ରଖି, ରାଜ୍ୟର ଅନ୍ୟ ଉନ୍ନତିକର କାର୍ଯ୍ୟରେ ଅର୍ଥବ୍ୟୟ କରିବାର ଆଦେଶ ଦେଇ ଆସୁଥିଲେ ।

ମହାରାଜା କେଡ଼େ ସରଳପ୍ରକୃତି ଓ ନିରାଡ଼ମ୍ବର ଥିଲେ, ତାହା ଗୋଟିଏ ଘଟଣାରୁ ବେଶ୍ ଜଣା ପଡ଼େ । କଟକର ଇଂରାଜୀ ଖବର-କାଗଜ "ଷ୍ଟାର ଅଫ୍ ଉତ୍କଳ"ର ସମ୍ପାଦକ କ୍ଷୀରୋଦ ବାବୁ ଦିନେ କଲିକତା ହାବଡ଼ା ଷ୍ଟେସନରେ ମହାରାଜାଙ୍କୁ ଏକାକୀ ଦେଖିଲେ । ଏକ ଟଙ୍କା ମୂଲ୍ୟର ଖଣ୍ଡେ ଲୁଗା, ପଞ୍ଜାବୀ ଓ ଚୁଦର ପରିଧାନ କରି ମହାରାଜା ନିଜେ ଟିକଟ୍ କିଣିବା ପାଇଁ ଠିଆ ହୋଇ ରହିଅଛନ୍ତି । କ୍ଷୀରୋଦ ବାବୁ ଟିକିଏ ବିସ୍ମିତ ହୋଇ ଚାରିଆଡ଼କୁ ଚାହିଁ ପଚାରିଲେ— "ମହାରାଜ, ଆପଣଙ୍କ ଲୋକମାନେ କାହାନ୍ତି ? ଆପଣ ନିଜେ ଆସି ଟିକଟ କିଣୁଛନ୍ତି କାହିଁକି ?"

ମହାରାଜା ଶ୍ରୀରାମଚନ୍ଦ୍ର ହସି ହସି ଚାରିଆଡ଼କୁ ଆଖି ବୁଲାଇ କ୍ଷୀରୋଦ ବାବୁଙ୍କୁ କହିଲେ—"ଆପଣଙ୍କ ଲୋକମାନେ କାହାନ୍ତି ? ଆପଣ ନିଜେ କାହିଁକି ଟିକଟ କିଣିବାକୁ ଆସିଛନ୍ତି ?"

କ୍ଷୀରୋଦ ବାବୁ କହିଲେ—"ମହାରାଜ, ଆପଣ ମୟୂରଭଞ୍ଜର ହର୍ତ୍ତା କର୍ତ୍ତା; ମୁଁ ଚାକିରି କରି ଅନ୍ନସଂସ୍ଥାନ କରେ । ମୋର ପୁଣି ଆପଣଙ୍କ ସଙ୍ଗରେ ତୁଳନା !"

ମହାରାଜା କହିଲେ—"କ୍ଷୀରୋଦ ବାବୁ, ଘଟଣାଚକ୍ରରେ ମୁଁ ମୟୂରଭଞ୍ଜର ମହାରାଜା; ତହିଁରେ ମୋର କୃତିତ୍ୱ କଅଣ ଅଛି ? ରାଜକୁଳରେ ଜନ୍ମଗ୍ରହଣ କରି ନ ଥିଲେ, ମୋର ଅବସ୍ଥା କଅଣ ହୋଇ

ଥାଅନ୍ତା, ଥରେ ଭାବନ୍ତୁ ଦେଖି ? କନ୍ତୁ ଅପଣଙ୍କ ସମ୍ମାନ ଅପଣଙ୍କ ନଜକୃତ । ଅପଣଙ୍କ ସହତ ମୋର ପୁଣି କେଉଁ ଗୁଣରେ ତୁଳନା ?"

କ୍ଷୀରୋଦ ବାବୁ ଅପ୍ରତଭ ହେଲେ ।

ବସନ, ଭୂଷଣ ଓ ଗୃହର ସାଜସଜ୍ଜାରେ ଯେପର, ନଜର ଖାଦ୍ୟ ପେୟରେ ମଧ୍ୟ ମହାରାଜା ଶ୍ରୀରାମଚନ୍ଦ୍ର ସେହପର ବଡ଼ ସଂଯତ, ବଡ଼ ମିତବ୍ୟୟୀ ଥିଲେ । ଯାହା ଯେଉଁଠାରେ ମିଳଲା, ଅକୁଣ୍ଠିତଚତ୍ତରେ ଭୋଜନ କର ସେ ତୃପ୍ତିଲାଭ କରୁଥିଲେ । ତାଙ୍କର କର୍ମଚାରୀମାନେ ତାଙ୍କ ଅପେକ୍ଷା ଭଲ ଖାଦ୍ୟ ପେୟର ବନ୍ଦୋବସ୍ତ କର ପାରୁଥିଲେ । ରାଜ୍ୟର ମଙ୍ଗଳ ନମିତ୍ତ ନଜକୁ ଏପର ଭୁଲି ପାର ନ ଥିଲେ, ତାଙ୍କଦ୍ୱାର ଏତେ ଶୁଭପ୍ରଦ କାର୍ଯ୍ୟ ସମ୍ପନ୍ନ ହେବାର ଅସମ୍ଭବ ହୋଇଥାଆନ୍ତା । ରାଜା ପ୍ରଜାମାନଙ୍କର ପୂଜ୍ୟ ଦେବତା ସମାନ—'ମହତୀ ଦେବତା ହ୍ୟେଷା ନରରୂପେଣ ତଷ୍ଠତ ।' ହନ୍ଦୁର ରାଜା ଏତେ ସମ୍ମାନାସ୍ପଦ, ମାତ୍ର ପକ୍ଷାନ୍ତରରେ ସେହ ରାଜା ପ୍ରଜାଙ୍କ ମଙ୍ଗଳ ନମିତ୍ତ ସର୍ବସ୍ୱ ତ୍ୟାଗ କରବେ; ନଜର ଭୋଗ ବଳାସ, ସନ୍ତାନ, ପରବାର, ଏମନ୍ତ କ, ନଜର ପ୍ରାଣ ପର୍ଯ୍ୟନ୍ତ ପ୍ରଜାର ମଙ୍ଗଳପାଇଁ ଉତ୍ସର୍ଗ କରବାକୁ କୁଣ୍ଠିତ ହେବେ ନାହିଁ । ରାଜା ପ୍ରଜାର ଏ ସମ୍ବନ୍ଧ ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ଜୀବନବ୍ୟାପୀ କାର୍ଯ୍ୟରେ ଏହି ଯୁଗରେ ପ୍ରତଫଳତ ହୋଇଅଛି । ଏ ମହାପୁରୁଷଙ୍କ ଜୀବନଚରତରୁ ଓଡ଼ଶାର ରାଜା, ମହାରାଜା ଓ ପ୍ରତ୍ୟେକ ନରନାରୀଙ୍କର ଯଥେଷ୍ଟ ଶିକ୍ଷା କରବାର ଅଛି ।

ମୟୂରଭଞ୍ଜର ପଞ୍ଚପୀର ସବ୍‌ଡଭିଜନକୁ ମହାରାଜା ଥରେ ଗସ୍ତ କରବାକୁ ଯାଇଥିଲେ ଏବଂ ସବ୍‌ଡଭିଜନ୍ ଅଫିସରଙ୍କ ଗୃହରେ ସେ ଅତଥି ହୋଇଥିଲେ । ପାଚକ ମଧ୍ୟ ମହାରାଜାଙ୍କର କେତେକ ଖାଦ୍ୟୋପଯୋଗୀ ଜନଷ ସାଙ୍ଗରେ ରଖିଥିଲା । ଅଫିସର ମହୋଦୟ ମହାରାଜାଙ୍କ ନକଟରେ

କ କ ଜିନଷ ଅଛୁ ଦେଖିବା ନିମିତ୍ତ ପାଚକଠାରୁ ଗଣ୍ଡିରାଟି ଆଣି ଫିଟାଇ ଦେଖିଲେ ଯେ, ତହିଁରେ କେତେଟା ଶୁଖିଲ୍ଲ ଫୁଲକୋବ, ପନିପରିବା ଓ କିଛି ବଡ଼ି ରହିଅଛି । ସେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ମଧୁକୁ ପଚାରିଲେ—"ମଧୁ, ଏତିକି ନା, ଆଉ କିଛି ଅଛି ?"

ମଧୁ କହିଲ—"ନା, ବାବୁ, ଡାଲି ଚାଉଳ ଓ କିଛି ଘିଅ ମଧ୍ୟ ଅଛି ।"

ସବୁ ଶୁଖିଲ୍ଲ ବାସି ପରିବା ରଖି ଦେଇ ବାବୁ ମହୋଦୟ ନିଜ ବଗିଚାରୁ ତଟକା ବାଇଗଣ, ଆଳୁ ଓ ମଟର ଛୁଇଁ ଅଣାଇ ତରକାରି କରାଇଲେ ।

ଖାଇବାବେଳେ ଏତେ ଭଲ ପରିବା ତରକାରି ଦେଖି ମହାରାଜା ଆଶ୍ଚର୍ଯ୍ୟ ହୋଇ ସବ୍‌ଡିଭିଜନ୍ ବାବୁଙ୍କୁ ପଚାରିଲେ—"ଆପଣ ଏତେ କଷ୍ଟ ସ୍ୱୀକାର କରି ଏତେ ପ୍ରକାର ତରକାରି କାହିଁକି କରାଇଲେ ? ଆମ ବ୍ୟବହାରପାଇଁ ତ ସମସ୍ତ ଜିନିଷ ମଧୁ ପାଖରେ ଥିଲା ।"

ବାବୁ ଲଜ୍ଜିତ ହୋଇ କିଛି କହି ପାରିଲେ ନାହିଁ । ମନେ ମନେ ଭାବିଲେ —"ହଁ, ମହାରାଜ ! ମୁଁ ଦେଖିଛି ଆପଣଙ୍କ ଜିନିଷ । ଆପଣଙ୍କର ନୌକର ଚାକର ଆପଣଙ୍କ ଅପେକ୍ଷା ଭଲ ଖାଆନ୍ତି ।"

ଶ୍ରୀରାମଚନ୍ଦ୍ରଙ୍କ ଭଳି ଏଡ଼େ ଅମାୟିକ ନିରାଡ଼ମ୍ବର ସରଳପ୍ରକୃତିର ଲୋକ ଆଜିକାଲି ଦେଖିବାକୁ ବଡ଼ ବିରଳ । ରାଜା ଏପରି ହେଲେ ରାଜା ପ୍ରଜା ମଧ୍ୟରେ ବିବାଦ ବିସମ୍ବାଦର କାରଣ ରହନ୍ତା ନାହିଁ ।

ଥରେ ମୟୂରଭଞ୍ଜର ଜଣେକ ଭଦ୍ରବ୍ୟକ୍ତି ଗୋଟିଏ ପ୍ରାର୍ଥନାସଭା ଆହ୍ୱାନ କରି ମହାରାଜାଙ୍କୁ ନିମନ୍ତ୍ରଣ କରିଥିଲେ । ଖୋଲା ପଡ଼ିଆରେ ଘାସ

ଉପରେ ସମସ୍ତଙ୍କର ବସିବାର ବ୍ୟବସ୍ଥା ହୋଇଥିଲା, କେବଳ ମହାରାଜାଙ୍କ ନିମନ୍ତ ଖଣ୍ଡେ ଚୁଲ୍ ପଡ଼ିଥାଏ । ସଭା ଆରମ୍ଭ ହେବାର କିଛିକ୍ଷଣ ପରେ ଶ୍ରୀରାମଚନ୍ଦ୍ର ଆସି ପହଞ୍ଚିଗଲେ । ବାହାରେ ଯୋତା ରଖି ଦେଇ ଖାଲି ଗୋଡ଼ରେ ସମସ୍ତଙ୍କ ସଙ୍ଗରେ ଭୂଇଁରେ ବସି ପଡ଼ିଲେ । ଏ ଗୋଟିଏ ସାମାନ୍ୟ ଘଟନା ହୋଇ ପାରେ । ମାତ୍ର ଏହିପରି ସାମାନ୍ୟ ଘଟଣାରୁ ତାଙ୍କ ହୃଦୟର ମହତ୍ତ୍ୱର ଯଥେଷ୍ଟ ପରିଚୟ ମିଳେ ।

କର୍ମ ତାଙ୍କର ଅସ୍ଥିମଜ୍ଜାଗତ ଥିଲା । ରାଜ୍ୟପାଇଁ, ପ୍ରଜାମାନଙ୍କ ମଙ୍ଗଳ ନିମନ୍ତ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ପରିତ୍ୟାଗ କରି ସେ ସର୍ବଦା କର୍ମରେ ରତ ଥିଲେ । ରାଜକର୍ମଚାରୀମାନେ ନିୟମିତ ପରିଶ୍ରମ କରି ମାସକୁ ମାସ ଦରମା ପାଆନ୍ତି, ମାତ୍ର ମହାରାଜା ରାଜ୍ୟର ହିତ ପାଇଁ ଦିବାରାତ୍ର କାର୍ଯ୍ୟରେ ଲାଗିଥାଆନ୍ତି । ବାସ୍ତବିକ ତାଙ୍କ ପରି ମୟୂରଭଞ୍ଜରେ ଆଉ କେହି ଏତେ ପରିଶ୍ରମ କରୁ ନ ଥିଲେ । ଅନବରତ କାର୍ଯ୍ୟରେ ଲିପ୍ତ ଥାଇ ସେ ସମୟ ସମୟରେ ଆହାର ନିଦ୍ରା ପର୍ଯ୍ୟନ୍ତ ପରିତ୍ୟାଗ କରୁଥିଲେ । ଶରୀର ପୀଡ଼ାଗ୍ରସ୍ତ ହେଲେ ଡାକ୍ତରମାନେ ତାଙ୍କୁ ଅତ୍ୟଧିକ ପରିଶ୍ରମ ପରିତ୍ୟାଗ କରିବା ନିମନ୍ତ ଉପଦେଶ ଦେଉଥିଲେ । ମହାରାଜା ହସି ହସି ଉତ୍ତର ଦେଉଥିଲେ—"ମନୁଷ୍ୟର ଜନ୍ମ କର୍ମ କରିବା ପାଇଁ ।"

ସେ ନିଜକୁ ପ୍ରଜାମାନଙ୍କର ଭୃତ୍ୟ ବୋଲି ମନେ କରୁଥିଲେ ଏବଂ ପ୍ରଜାମାନଙ୍କ ଉନ୍ନତିକଳ୍ପେ କୌଣସି ଦିନ କିଛି କରି ନ ପାରିଲେ, ଆପଣାକୁ ଦୋଷୀ ମନେ କରୁଥିଲେ । 'ରାଜ୍ୟର ପାପ ରଜା ମୁଣ୍ଡରେ', ଏ ପ୍ରବଚନର ନିଗୂଢ଼ ଅର୍ଥ ସେ ଅନ୍ତରେ ଅନ୍ତରେ ଅନୁଭବ କରି ପାରିଥିଲେ । ସେଥିପାଇଁ ବିଦେଶ ଭ୍ରମଣ କରିଯିବା ପୂର୍ବରୁ ଅନେକ ଦିନ ଇତସ୍ତତଃ କରିଥିଲେ—ତାଙ୍କ ଅନୁପସ୍ଥିତିରେ କାଳେ ରାଜ୍ୟର କିଛି ଅନିଷ୍ଟ ହେବ, ପ୍ରଜାମାନଙ୍କ ଉପରେ କାଳେ କେହି ଅତ୍ୟାଚାର

କରିବ । ସୌଖିକନ ଭାବରେ ସେ ବିଦେଶ ବୁଲି ବାହାର ନ ଥିଲେ—ବିଦେଶକୁ ଯାଇ ସେଠାର ଅନେକ ଶିଳ୍ପ ଓ ବାଣିଜ୍ୟ ଦେଖି ଆସି, ତାହାର ଅନୁକରଣରେ ନିଜ ରାଜ୍ୟର ଉନ୍ନତି କରି ପାରିବେ, ଏହି ଉଦ୍ଦେଶ୍ୟରେ ସେ ବିଦେଶଯାତ୍ରା ପାଇଁ ଇଚ୍ଛା କରିଥିଲେ । ମାତ୍ର ଯେତେବେଳେ ବୁଝି ପାରିଲେ ଯେ, ତାଙ୍କ ଅନୁପସ୍ଥିତିରେ ମଧ୍ୟ ରାଜ-କାର୍ଯ୍ୟ ସୁଗୃରୁରୂପେ ଚାଲିବ, ତେତେବେଳେ ଯାଇ ବିଦେଶଯାତ୍ରାର ଯୋଗାଡ଼ କଲେ ।

ରାଜ୍ୟରେ ଯେପରି ଆଦର୍ଶ ରାଜା, ପରିବାର ମଧ୍ୟରେ ମଧ୍ୟ ସେ ଆଦର୍ଶ ଗୃହସ୍ଥ ଥିଲେ । ନିଜର ସନ୍ତାନ ସନ୍ତତି ଓ ଆତ୍ମୀୟ ସ୍ୱଜନମାନଙ୍କ ପ୍ରତି ତାଙ୍କର ହୃଦୟ ସ୍ନେହପ୍ରବଣ ଥିଲା । ଯାହା ପ୍ରତି ଯେପରି ବ୍ୟବହାର କରିବା ଉଚିତ, ସେ ତାହା କରିବାରେ ତ୍ରୁଟି କରି ନାହାନ୍ତି । ରାଜପରିବାର ମଧ୍ୟରେ କାହାର କେତେବେଳେ ଶରୀର ଅସୁସ୍ଥ ହେଲେ, ସେ ଉଦ୍‌ବିଗ୍ନ ହୋଇ ଚିକିତ୍ସାର ଯଥୋଚିତ ବିଧାନ କରୁଥିଲେ ଏବଂ ନିଜେ ରୋଗୀ ନିକଟରେ ବସି ରହି ସେବା ଶୁଶ୍ରୂଷାର ସୁବନ୍ଦୋବସ୍ତ କରି ଦେଉଥିଲେ ।

ମହାରାଜା ଶ୍ରୀରାମଚନ୍ଦ୍ର ରାଜ୍ୟର ଉନ୍ନତିରେ ମନଃପ୍ରାଣ ଢାଳି ଦେଇ ସୁଦ୍ଧା ବିଦ୍ୟାଚର୍ଚ୍ଚା ଭୁଲି ନ ଥିଲେ । ପ୍ରତିଦିନ ନିୟମିତ ସମୟରେ ସେ ଉପନିଷଦ, ବେଦାନ୍ତ ଓ ଶ୍ରୀମଦ୍‌ଭଗବଦ୍‌ଗୀତାର ଚର୍ଚ୍ଚା କରୁଥିଲେ । ପାଶ୍ଚାତ୍ୟ ସାହିତ୍ୟ ଓ ପାଶ୍ଚାତ୍ୟ ଦର୍ଶନଶାସ୍ତ୍ର ସେ ସମଧିକ ଆଲୋଚନା କରିଥିଲେ । କୌଣସି ଉପାଦେୟ ନୂତନ ପୁସ୍ତକ ପ୍ରକାଶିତ ହେବାର ଖବର ପାଇବାକ୍ଷଣି ସେ କିଣି ଆଣି ତାହା ପାଠ କରୁଥିଲେ । ଦେଶ ବିଦେଶର ଇତିହାସ ଓ ଆଇନଶାସ୍ତ୍ରରେ ସେ ସୁପଣ୍ଡିତ ଥିଲେ ।

କଟକର ଖ୍ୟାତନାମା ଓକିଲ ବାବୁ ନରେନ୍ଦ୍ରନାଥ ସରକାରଙ୍କ ସହିତ ମହାରାଜାଙ୍କର ଘଟଣାକ୍ରମେ ଦେଖା ସାକ୍ଷାତ୍ ହୋଇଥିଲା । ନରେନ୍ଦ୍ର ବାବୁଙ୍କର ଦର୍ଶନଶାସ୍ତ୍ରରେ ଯଥେଷ୍ଟ ବ୍ୟୁତ୍ପତ୍ତି ଥିଲା । ମହାରାଜାଙ୍କ ସଙ୍ଗେ ଦର୍ଶନଶାସ୍ତ୍ର ଆଲୋଚନା କରି ସେ ବିମୁଗ୍ଧ ହୋଇଥିଲେ । ଦର୍ଶନରେ ଶ୍ରୀରାମଚନ୍ଦ୍ର ଯେ ଏଡ଼େ ପାରଦର୍ଶୀ, ତାହା ନରେନ୍ଦ୍ର ବାବୁଙ୍କୁ ଜଣା ନ ଥିଲା । ନରେନ୍ଦ୍ର ବାବୁଙ୍କ ସମସ୍ତ ପ୍ରଶ୍ନ ଅତି ସହଜରେ ସେ ସମାଧାନ କରି ଦେଇ ତାଙ୍କୁ ଚମତ୍କୃତ କରିଥିଲେ ।

ଅର୍ଥଶାସ୍ତ୍ରରେ ( Economics ) ମଧ୍ୟ ତାଙ୍କର ଯଥେଷ୍ଟ ଦଖଲ ଥିଲା । ପୃଥିବୀର ସବୁ ଦେଶର ଅର୍ଥସମସ୍ୟା ସେ ଆଲୋଚନା କରିଥିଲେ । ଆମେରିକା ବିଶ୍ୱବିଦ୍ୟାଳୟର ଉପାଧିଧାରୀ ଜଣେ ଅର୍ଥଶାସ୍ତ୍ରବିତ୍ ବ୍ୟକ୍ତି ମହାରାଜାଙ୍କ ସଙ୍ଗେ ଆଲୋଚନା କରି ତାଙ୍କର ବିଦ୍ୱତ୍ତା ଦେଖି ବିସ୍ମିତ ହୋଇ ଯାଇଥିଲେ । କୌଣସି ବିଶ୍ୱବିଦ୍ୟାଳୟରେ ଉକ୍ତ ବିଷୟରେ ଉତ୍ତୀର୍ଣ୍ଣ ନ ହୋଇ ମଧ୍ୟ ନିଜର ଅଧ୍ୟବସାୟପ୍ରଭାବରୁ ମହାରାଜା ଏଡ଼େ ପାରଦର୍ଶୀ ହୋଇଥିବାର ଦେଖି ଉକ୍ତ ଭଦ୍ରବ୍ୟକ୍ତି ଅବାକ୍ ହୋଇ ଶତମୁଖରେ ତାଙ୍କର ପ୍ରଶଂସା ଗାନ କରିଥିଲେ ।

ସବୁ ବିଷୟରେ ତାଙ୍କର ମତ ବଡ଼ ଉଦାର ଥିଲା । ରକ୍ଷଣଶୀଳ ହିନ୍ଦୁ ସମାଜର ନେତାମାନଙ୍କଠାରେ ତାଙ୍କର ବିଶ୍ୱାସ ନ ଥିଲା । ସମୟର ପରିବର୍ତ୍ତନ ସଙ୍ଗେ ସମାଜସଂସ୍କାର ଅବଶ୍ୟମ୍ଭାବୀ । ସେହି ସଂସ୍କାର ବିରୁଦ୍ଧରେ ଦଣ୍ଡାୟମାନ ହେବା ଉଚିତ ନୁହେ । ମାନବସମାଜରେ କୌଣସି ଏକ ପ୍ରଥା ଏକ ଧରଣରେ ଚିରକାଳ ଚଳି ନ ପାରେ । ସମୟକ୍ରମେ ତାହାର ପରିବର୍ତ୍ତନ ନିଶ୍ଚୟ ଘଟିବ । ସାମାଜିକ ରକ୍ଷଣ-ଶୀଳତା ଜାତୀୟ ଉନ୍ନତିର ପ୍ରଧାନ ଅନ୍ତରାୟ ଏବଂ ସାମାଜିକ କୌଣସି ପ୍ରଶ୍ନ ସମାଧାନ କରିବାକୁ ହେଲେ, ଆମ୍ଭମାନଙ୍କୁ ସମସ୍ତ ମାନବଜାତି ପ୍ରତି

ଦୃଷ୍ଟି ଦେବାକୁ ହେବ । କୂପମଣ୍ଡୂକ ପରି "ଆମର ଯାହା ଅଛି ସବୁ ଭଲ" ଗୀତ ଧରି ବସିଲେ, ଜାତୀୟ ଉନ୍ନତି ଅସମ୍ଭବ ହେବ । ସମାଜବିଷୟରେ ଏତେ ଉଦାରନୈତିକ ହୋଇ ମଧ୍ୟ ସେ ଏକାବେଳକେ ହଠାତ୍ କୌଣସି ସାମାଜିକ ପରିବର୍ତ୍ତନର ପକ୍ଷପାତୀ ନ ଥିଲେ । କବିବର ରାଧାନାଥ ରାୟଙ୍କ ପ୍ରତିମୂର୍ତ୍ତି (Statue) ମ୍ୟୁନିସିପାଲିଟି ପଡ଼ିଆରେ ସ୍ଥାପିତ କରିବାର ସ୍ଥିର ହୋଇଥିଲା । କବିବରଙ୍କ ସୁଯୋଗ୍ୟ ପୁତ୍ର ଶ୍ରୀଯୁକ୍ତ ଶଶିଭୂଷଣ ରାୟ ସମସ୍ତ ବ୍ୟୟଭାର ବହନ କରି ଦେଶର କୃତଜ୍ଞତାଭାଜନ ହୋଇଅଛନ୍ତି । ଏହି ମୂର୍ତ୍ତିର ଉଦ୍‌ଘାଟନ କ୍ରିୟା ସମ୍ପାଦନ କରିବା ନିମିତ୍ତ ଶଶୀ ବାବୁ ମହାରାଜାଙ୍କୁ ଅନୁରୋଧ କରିଥିଲେ । ଉତ୍ତରରେ ମହାରାଜା ଶଶୀ ବାବୁଙ୍କୁ ଯାହା ଲେଖିଥିଲେ, ପାଠକମାନଙ୍କ ଅବଗତି ନିମିତ୍ତ ତାହା ନିମ୍ନରେ ଦିଆଗଲା:—

Camp Bangriposi
31-5-11

My dear Madhu Babu,

Very many thanks for the framed mottos of your revered father which you have so kindly sent to me. I appreciate them very much and will hang them up in places which I frequent most.

About uncovering the statue of your father, I think I can manage to do it, if it takes place some-times say by the end of August or beginning of September next.

Hoping you are all right.

Yours sincerely
Sd. SR. C. BHANJ DEO
MOURBHANJ

ବାଙ୍ଗ୍ରିପୋସି
୩୧।୫।୧୧

ପ୍ରିୟ ମଧୁ ବାବୁ,

ଆପଣଙ୍କ ପିତାଙ୍କ ଲିଖିତ ପ୍ରବଚନଗୁଡ଼ିକ ବନ୍ଧାଇ ମୋ ନିକଟ ପଠାଇଥିବାରୁ ଆପଣଙ୍କୁ ଧନ୍ୟବାଦ । ସେଗୁଡ଼ିକ ଅତି ସୁନ୍ଦର ହୋଇଅଛି ଏବଂ ଯେଉଁସବୁ ସ୍ଥାନରେ ମୁଁ ଅଧିକାଂଶ ସମୟ ରହେ, ସେହି ସବୁ ସ୍ଥାନରେ ତାହା ଟଙ୍ଗାଇ ରଖିବି ।

ଆପଣଙ୍କ ପିତାଙ୍କ ପ୍ରତିମୂର୍ତ୍ତି-ଉଦ୍‌ଘାଟନ ଅଗଷ୍ଟ ମାସ ଶେଷ କିମ୍ବା ସେପ୍ଟେମ୍ବର ଆରମ୍ଭରେ କରାଯିବାର ଯଦି ସ୍ଥିର ହୁଏ, ତାହାହେଲେ ମୁଁ ଯାଇ ପାରେଁ ।

ଆଶା କରେଁ ଆପଣଙ୍କର ସମସ୍ତ ମଙ୍ଗଳ ।

ବଶମ୍ବଦ
(ସ୍ୱାକ୍ଷର) ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ
ମୟୂରଭଞ୍ଜ

ଧର୍ମ ତାଙ୍କ ଜୀବନର ମୂଳମନ୍ତ୍ର ଥିଲା । ପ୍ରଗାଢ଼ ଈଶ୍ୱରବିଶ୍ୱାସ ତାଙ୍କୁ ବିପଦ ସମୟରେ ଆଶ୍ୱାସନା ପ୍ରଦାନ କରୁଥିଲା ଏବଂ ଭଗବାନଙ୍କ ପ୍ରତ୍ୟେକ କାର୍ଯ୍ୟର ମୂଳରେ ମଙ୍ଗଳ ନିହିତ ଥିବାର ବିଶ୍ୱାସ କରି ସେ ନିଶ୍ଚିନ୍ତ ଥିଲେ । ଈଶ୍ୱର ଏକ ଏବଂ ସର୍ବମୟ । ଅମ୍ଭେମାନେ ସଂସାରରେ ଯେ ବୈଚିତ୍ର୍ୟ ଦେଖୁଁ, ସେ ସବୁ ଏକ ଭଗବାନଙ୍କର ବିଭିନ୍ନ ଆଭାସ ମାତ୍ର । ଆତ୍ମା ପୃଥକ୍ ନୁହେ । ପ୍ରତ୍ୟେକ ମାନବର ପୃଥକ୍ ଆତ୍ମାର କୌଣସି ସତ୍ତା ନାହିଁ; ସବୁ ସେହି ସର୍ବମୟ ପରମାତ୍ମାଙ୍କର ଆଭାସ ବ୍ୟତୀତ ଅନ୍ୟ କିଛି ନୁହେ—ବେଦାନ୍ତର ଏହି ଅଦ୍ୱୈତବାଦରେ ସେ ଚିରବିଶ୍ୱାସୀ ଥିଲେ ।

ନିଜର ଧର୍ମମତ ଯାହା ହେଉ, ଅନ୍ୟର ଧର୍ମ ପ୍ରତି ସେ କେବେ ଅନାଦର ପ୍ରଦର୍ଶନ କରି ନାହାନ୍ତି । 'ଉତ୍କଳ-ସମ୍ମିଳନୀ'ର ପ୍ରଥମ ପୁରୋଧାରୂପରେ ସେ ଯେଉଁ ବକ୍ତୃତା ଦେଇଅଛନ୍ତି, ସେଥିରେ ତାଙ୍କର ଧର୍ମମତ ସ୍ପଷ୍ଟ ପ୍ରକଟିତ ହୋଇଅଛି—

"ଇତିହାସରୁ ପ୍ରମାଣ ମିଳେ ଯେ, ଧର୍ମର ନାମ ଘେନି ବୃହତ୍ ଯୁଦ୍ଧମାନ ଘଟିଅଛି । ରାଜାମାନେ କିମ୍ବା ଧର୍ମପ୍ରବର୍ତ୍ତକମାନେ ଏକମତ ହୋଇ ଅପରର ମତକୁ ଖଣ୍ଡନ କରି ଆପଣାର ମତକୁ ସଂସ୍ଥାପନ କରିବାପାଇଁ ବହୁ ଅତ୍ୟାଚାର କରିଅଛନ୍ତି । ଏପରି କାର୍ଯ୍ୟଦ୍ୱାରା ଧର୍ମର ଅସଦ୍‌ବ୍ୟବହାର ହୋଇଅଛି । ତଦ୍ରୂପ କାର୍ଯ୍ୟଦ୍ୱାରା ସ୍ୱାର୍ଥପର ଲୋକେ ଧର୍ମଦ୍ୱାରରେ ଦାୟୀ ଅଟନ୍ତି । ଧର୍ମ ଆମ୍ଭମାନଙ୍କୁ ଏହି ଶିକ୍ଷା ଦିଏ ଯେ, ପରମେଶ୍ୱର ସମସ୍ତଙ୍କର ପିତା ଓ ଆମ୍ଭେ ମନୁଷ୍ୟମାନେ ସମସ୍ତେ ଯେଉଁ ଜାତିରେ ଥାଉଁ, ପରସ୍ପର ଭ୍ରାତା ଅଟୁଁ । ଏହା ନ ବୁଝି ଯେଉଁମାନେ ସ୍ୱାର୍ଥସାଧନ ଉଦ୍ଦେଶ୍ୟରେ ଧର୍ମର ନାମ ଧରି ବିବାଦ ଓ ବିଚ୍ଛେଦ ମତାଇ ଦିଅନ୍ତି, ସେମାନେ ନିଜ ସ୍ୱଭାବଦୋଷରୁ ଏପରି କରନ୍ତି । ହିନ୍ଦୁ ଶାସ୍ତ୍ରରେ ଗୋଟିଏ ଉପଦେଶ ଅଛି—'ଯେଉଁ ଧର୍ମ ଅପର ଧର୍ମକୁ ନିନ୍ଦା କରେ, ତାହା ଧର୍ମପଦବାଚ୍ୟ ନୁହେ ।' ଏହା ଅତି ସତ୍ୟ ଓ ସାରଗର୍ଭ କଥା ।"

ରାଜ୍ୟରେ କୌଣସି କର୍ମଚାରୀ ନିଯୁକ୍ତ କଲାବେଳେ ସେ ଉପଯୁକ୍ତ ଲୋକ ବାଛି ନିଯୁକ୍ତ କରୁଥିଲେ । କେତେକେ ମନେ କରି ପାରନ୍ତି ଯେ, ମହାରାଜା ଓଡ଼ିଆମାନଙ୍କୁ ରାଜ୍ୟରେ ନିଯୁକ୍ତ କରିବାରେ ପରାଙ୍ମୁଖ ଥିଲେ, ଏହା ବଡ଼ ଅଲୀକ ଧାରଣା । ରାଜକାର୍ଯ୍ୟର କ୍ଷତି କରି କେବଳ ଓଡ଼ିଆ ବୋଲି ବା ଅନ୍ୟ କୌଣସି ଜାତି ବୋଲି କୌଣସି ବ୍ୟକ୍ତିକୁ ନିଯୁକ୍ତ କରିବାକୁ ସେ ଯୁକ୍ତିଯୁକ୍ତ ମନେ କରୁ ନ ଥିଲେ । କର୍ମପ୍ରାର୍ଥୀ ବ୍ୟକ୍ତି ଯେଉଁ ଜାତିର ହୁଅନ୍ତୁ ପଛକେ, ଉପଯୁକ୍ତ ନ ହେଲେ ସେ ତାହାଙ୍କୁ କୌଣସି

କ୍ଷେତ୍ରରେ ନିଯୁକ୍ତ କରୁ ନ ଥିଲେ । କେବଳ ଓଡ଼ିଆ ବୋଲି ଯେ ତାଙ୍କୁ ନିଯୁକ୍ତ କରିବାକୁ ହେବ ଏବଂ ତାଙ୍କଠାରୁ ଯୋଗ୍ୟତର ଅନ୍ୟ କୌଣସି ଜାତୀୟ ବ୍ୟକ୍ତିଙ୍କୁ ନିରାଶ କରିବାକୁ ହେବ, ଏପରି ମତର ଅବଶ୍ୟ ସେ ପକ୍ଷପାତୀ ନ ଥିଲେ । ଏହା ବୋଲି କେହି ମନେ କରିବେ ନାହିଁ ଯେ, ମହାରାଜା ଓଡ଼ିଆମାନଙ୍କର ଦାବୀ ଉପେକ୍ଷା କରୁଥିଲେ । ଯେଉଁ ଓଡ଼ିଆଠାରେ ସେ କିଛି ବିଶେଷତ୍ୱ ଦେଖି ପାରିଅଛନ୍ତି, ବହୁ ଚେଷ୍ଟା କରି ତାଙ୍କୁ ନେଇ ନିଜ ରାଜ୍ୟରେ ନିଯୁକ୍ତ କରିଅଛନ୍ତି ।

ରାଜ୍ୟର ସମୃଦ୍ଧି ଉନ୍ନତି ସଙ୍ଗେ ସେ ଜନ୍ମଭୂମି ଉତ୍କଳର ଉନ୍ନତିରେ ମନ ବଳାଇଥିଲେ । ଉତ୍କଳର ଭାଷା, ଉତ୍କଳର ନଦ ନଦୀ, ବନ ପର୍ବତ ଓ ଶିଳ୍ପକଳା ତାଙ୍କ ନିକଟରେ ବଡ଼ ପବିତ୍ର ଥିଲା । ଉତ୍କଳର ପୂର୍ବ ଗୌରବରେ ସେ ନିଜକୁ ଗୌରବାନ୍ୱିତ ମନେ କରୁଥିଲେ । ଓଡ଼ିଆ ଜାତି ଛିନ୍ନବିଚ୍ଛିନ୍ନ ହୋଇ ବିଭିନ୍ନ ପ୍ରଦେଶରେ ପଡ଼ି ରହିଥିବାର ହୃଦୟଙ୍ଗମ କରି, ସେ ମର୍ମାହତ ହୋଇଥିଲେ ଏବଂ ସେ ବିଷୟରେ ଯଥାସାଧ୍ୟ ଚେଷ୍ଟା କରିବେ ବୋଲି ପ୍ରତିଶ୍ରୁତ ହୋଇଥିଲେ । ଓଡ଼ିଆ ଜାତିର ସର୍ବପ୍ରଥମ ମିଳନମେଳା "ଉତ୍କଳ-ସମ୍ମିଳନୀ"ର ସେ ପ୍ରଥମ ସଭାପତି । ଦେଶ ବିଦେଶ ପରିଭ୍ରମଣ କରି ଶିଳ୍ପ, କୃଷି ଓ ବାଣିଜ୍ୟ ବିଷୟରେ ସେ ଯେଉଁ ଅମୂଲ୍ୟ ଅଭିଜ୍ଞତା ଅର୍ଜନ କରି ସ୍ୱଦେଶକୁ ଫେରି ଆସିଥିଲେ, ସେ ଅଭିଜ୍ଞତାର ସମ୍ୟକ୍ ଫଳ ନିଶ୍ଚୟ ଉତ୍କଳ ଉପଭୋଗ କରିଥାଆନ୍ତା । ମାତ୍ର ଓଡ଼ିଶାର ଭାଗ୍ୟ ମନ୍ଦ, ବିଦେଶରୁ ଫେରି ଆସିବାର ଅଳ୍ପ ଦିନ ପରେ ସ୍ୱର୍ଗଦୁନ୍ଦୁଭି ଶୁଣି ପାରି ସେ ଅମରଧାମକୁ ଯାତ୍ରା କଲେ ।

ମହାରାଜାଙ୍କ ହୃଦୟ ବଡ଼ ଦୟାର୍ଦ୍ର ଥିଲା । କେତେ ବିପନ୍ନ ପରିବାର ତାଙ୍କଠାରୁ ସାହାଯ୍ୟ ପାଇଅଛନ୍ତି, ତାର ଇୟତ୍ତା ନାହିଁ ।

କେତେ ଦୁଃସ୍ଥ ଛାତ୍ର ମଧ୍ୟ ତାଙ୍କଠାରୁ ସାହାଯ୍ୟ ପାଇ ବିଦ୍ୟାର୍ଜ୍ଜନ କରିଅଛନ୍ତି । କେହି ଆଗନ୍ତୁକ ଯାଇ କିଛି ପ୍ରାର୍ଥନା କଲେ ଯଥାବିଧି ପୁରସ୍କୃତ ହେଉଥିଲେ । କେତେ କବି, ପଣ୍ଡିତ ମହାସମାଦରରେ ରାଜ-ନଅରକୁ ଆହୂତ ହୋଇ ଅଶାତୀତ ଉପହାର ପାଇ ପ୍ରସନ୍ନମନରେ ବିଦାୟ ହେଉଥିଲେ । କଳିଯୁଗରେ ରାଜକୁଳରେ ଜନ୍ମଗ୍ରହଣ କରି ସର୍ବାଂଶରେ ସେ କଳିକୁ ପରାସ୍ତ କରି ପାରିଥିଲେ । ତାଙ୍କ ବିଷୟରେ କବିବର ରାଧାନାଥ ତାଙ୍କ ଅତୁଳନୀୟ ଭାଷାରେ ଯାହା ଗାଇ ଯାଇଅଛନ୍ତି, ତାହା ପାଠକମାନଙ୍କୁ ଉପହାର ଦେଉଅଛୁଁ —

"ଆଶାସ୍ଥି-ଉତ୍କଳ-ଆଶା-କିଶୋର-ପାଦପ,
ଗୁଣାରାମ ରାମଚନ୍ଦ୍ର ଭଞ୍ଜକଞ୍ଜରବି,
ଭଞ୍ଜକୁଳଧ୍ୱଜ-କୃଷ୍ଣଚନ୍ଦ୍ର-ଜ୍ୟେଷ୍ଠାତ୍ମଜ,
ଶୁଣିଲି ମୁଁ ବହୁମୁଖୀ-ଜନଶ୍ରୁତି-ମୁଖେ,
ନବରେ ତୁମ୍ଭର କଳି ପଶନ୍ତେ ପ୍ରଥମେ,
ଅବିରତ ଦାନ-ବାରି-ପିଚ୍ଛିଳ ପ୍ରାଙ୍ଗଣେ
ସେ ନବରେ, ଗୃଲୁ ଗୃଲୁ ଅତି ସାବଧାନେ
ଖସଡ଼ି ତା ଗୋଡ଼ ଦୁଷ୍ଟ ପଡ଼ିଲା କଚାଡ଼ି
ଉତ୍ତାନେ, ବାହୁଡ଼ି ତେଣୁ ଗଲା ଅପମାନେ;
ସତ୍ୟ କି ହେ ଏ କାହାଣୀ ? ମିଥ୍ୟା ବୋଲି ଅବା
କେମନ୍ତେ ବୋଲିବି ? ଯେଣୁ ଦେଖୁଛି ନୟନେ
ପଶି ନାହିଁ ଦୁଷ୍ଟ ତୁମ୍ଭ ହୃଦୟ-କୁସୁମେ
କୀଟରୂପେ, କୂଟନୀତି-ପ୍ରୟୋଗ-ଅଗ୍ରଣୀ;
'ମଦନ' 'ଆଳସ୍ୟ' ନାମେ ବେନି ସେନାପତି
ଛନ୍ତି ଯେହୁ କଳିସୈନ୍ୟେ, ବର୍ତ୍ତିପଠୁ ସେହି

ଜିଣିବାକୁ ରାଜକୁଳ, ଜିଣି ଅବହେଳେ
ଅଳକାଳେ ଶତ ଶତ ରୂପ କୁସୁରତେ,
କଳ-ରାଜସଭାତଳେ ବନ୍ଧାଇଲେ ଶାନ୍ତି;
ତରୁଣ ଯୌବନ, ପୁଣି ରୂପ ଅପ୍ରତିମ,
ଗର୍ବୈଶ୍ୱର୍ଯ୍ୟପଣ ଦେଖି ତୁମ୍ଭର, ଏ ବେଳ
ପାଞ୍ଚୁଥିଲେ, ସ୍ୱଚ୍ଛେ ଏହି ଛଳ ମାର୍ଗେ ପଶି
ତୁମ୍ଭ ହୃଦ-ଦୁର୍ଗ-ଚୂଳେ ପୋତିବେ ପତାକା,
ମାନ ସର୍ବସ୍ୱେ ଦେଖି ବିବେକ-ପ୍ରହରୀ
ପ୍ରତି ମାର୍ଗେ, ବ୍ୟଗ୍ର ହୋଇ ପଳାଇଲେ ଦୂରେ;
'କ୍ରୋଧ'ଟି ଦୁର୍ଜୟ ରିପୁ, ତାକେ ମୃତ୍ୟୁଞ୍ଜୟ
କାମେ ଜିଣିବାକୁ ଯାଇ ହାରିଲେ ପା ପାଶେ,
ନିରଙ୍କୁଶ ପ୍ରଭୁପଣସତ୍ତ୍ୱେ ସେ ତୁମ୍ଭର
ଅଣି ନ ପାରିଲା ଗୃହକୁ ନେତେ ଅରୁଣିମା ।

× × ×

ଉତ୍କଳର ଅଶା-ନଭେ ତୁମ୍ଭେ ଶୁଭ୍ରକ୍ଷଣେ,
ହେ ରାଜେନ୍ଦ୍ର, ବିରାଜୁଛ ଦ୍ୱିଜରାଜରୂପେ,
'ରାଜା ରାଜ୍ୟାଶ୍ରମ-ଋଷି' କବିର ଏ ବାଣୀ
ଫଳ ଅଛିଅଛି ତୁମ୍ଭ ପବିତ୍ର ଜୀବନେ;
ଭାଗ୍ୟେ, କର୍ମେ, ବେଳ ଦଶେ ସୁଲକ୍ଷଣଯୁତ
ତୁମ୍ଭ ପରି ପୁତ୍ର ପାଇ ପୁତ୍ରବତୀ ଆଜି
ଚିର-ଅଭାଗିନୀ ଏହି ଉତ୍କଳ ଜନନୀ;
ସାର ଜୀଲା ଆଦ ଗ୍ରାମ୍ୟ ଅଭରଣଭାରେ
ଭାରବାନ୍ତ ଭୂପଦଳେ ନରପତି ଦୁର୍ଲଭ

ବନ୍ଧ୍ୟା ଦୟା ବନସ୍ଥାଦି ଅଗ୍ରାମ୍ୟ ଭୂଷଣେ
ଭୂଷିତ ତୁମ୍ଭଙ୍କୁ, ଭଞ୍ଜରାଜଲକ୍ଷ୍ମୀ ସହ,
ଦେଖଇ ଉତ୍କଳ, ଅହା, ଯେହ୍ନେ ଜଣୀଥିଲା
ଧ୍ରୁବଙ୍କୁ ଦେଖନ୍ତି କୋଟି ତାର-ନେହ ଫେଡ଼ି;
କିମ୍ବା ଯଥା ଦେବଦଳ ଜଳଧି ମନ୍ଥନେ
ହେଉଥିଲେ ହରଷେ ଦିବ୍ୟଜ୍ୟୋତ ପୁଷ୍ପଧାମ
ସିନ୍ଧୁବାରି-ସମୁତ୍‌ଥିତ ପାରିଜାତ ତରୁ,
ସଙ୍ଗେ ବିଶ୍ୱବନ୍ଦ୍ୟା ଦେବୀ ଇନ୍ଦିରା ସୁନ୍ଦରୀ
ଜ୍ୟୋତିର୍ମୟୀ ଜ୍ୟୋତିର୍ମୟକମଳବାସିନୀ;
କଳ୍ପତରୁ ଲଭି ଯଥା ନିଦିବ-ଦୁର୍ଗତି
ଘୁଞ୍ଚିଗଲା, ଘୁଞ୍ଚିଯାଉ ଉତ୍କଳ ମାତାର,
ଭଞ୍ଜରବି, ତୁମ୍ଭ ଯୋଗେ ଦୁର୍ଯୋଗ-ଜଡ଼ତା;
ଚିର-ନିରାନନ୍ଦ ମୁହିଁ ଦାରୁଣ ବିପାକେ,
ଝୁରୁଅଛି ନୈରାଶ୍ୟର ଅତଳ କୁହରେ,
ତଥାପି ଯଶସ୍ୱି, ତୁମ୍ଭ ସୁଯଶ-ସୌରଭେ
ଜଡ଼ କଣ୍ଠ ମୋର ଅଜ ମୁଖର ସଙ୍ଗୀତେ;
ପଲ୍ଲବ ମୁକୁଳ ଫୁଲ ମୃଦୁଲେ ଦୋଳାଇ,
କୁଞ୍ଚାଇ ତରଙ୍ଗମାଳେ ତଟିନୀର ବେଣୀ,
ମୁଖରି ନିକୁଞ୍ଜ-ବନେ ବନପ୍ରିୟକୁଳେ
ଝୁରୁ ଝୁରୁ ସ୍ୱନେ ଯେବେ କେଦାରେ କାନ୍ତାରେ
ପ୍ରସରେ ମଳୟସ୍ରୋତ ପରିମଳ-ସଖା,
ଉଲ୍ଲାସେ ଦୁଃଖର କ୍ଷଣ-ବିସ୍ମୃତିକ ଲଭି
ପିଞ୍ଜର ବିହଙ୍ଗ ଯଥା ଗୁବେ କ୍ଷଣେ କ୍ଷଣେ,

ଭୂମିର ଅଦେଖେ ବୀର । ଏ ମହାଗୀତକ
ଗାଇବା ଅଶକ୍ୟେ ଏବେ ଧରିଛି ମୁଁ କରେ
ଚିରମୂକ ବୀଣା ମୋର ସିକ୍ତ ନେତ୍ରଜଳେ,
ଅଦୃଷ୍ଟ ଏ ଗୀତ ଆଜୁ ଦିବ୍ୟ ଅବଧାନେ ।

---

# ଏକାଦଶ ଅଧ୍ୟାୟ

## ବାରିପଦା

ପ୍ରଭୁଙ୍କ ଅପାର କରୁଣା ବଳରେ ବାରିପଦା ଦର୍ଶନ ଆମ୍ଭମାନଙ୍କ ଭାଗ୍ୟରେ ଘଟିଲା । ରୂପସାଠାରୁ ଗତ ୮।୪।୨୮ ତାରିଖ ସକାଳେ ବାଷ୍ପୀୟଯାନ ତିନି ବନ୍ଧୁଙ୍କୁ ବହନ କରି ମୟୂରଭଞ୍ଜର ଅରଣ୍ୟାନୀ ମଧ୍ୟ ଦେଇ ଧୀର ମନ୍ଥର ଗତିରେ ଅଗ୍ରସର ହେଉଥାଏ । ଏହି ରେଲ୍ ରାସ୍ତା ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ଅକ୍ଷୟ କୀର୍ତ୍ତି ମଧ୍ୟରେ ଅନ୍ୟତମ । ଆଜିକାଲି ଏହା ବଙ୍ଗନାଗପୁର ରେଲ୍ କମ୍ପାନୀର ପରିଚାଳନାଧୀନ । ରୂପସାଠାରୁ ଗୋଟିଏ ପକ୍କା ସଡ଼କ ବାରିପଦା ପର୍ଯ୍ୟନ୍ତ ଯାଇଅଛି । ସମୟ ସମୟରେ ଏହି ସଡ଼କ ଦୃଷ୍ଟିପଥାରୂଢ଼ ହୋଇ ପୁଣି ଅଦୃଶ୍ୟ ହୋଇ ଯାଉଥାଏ । କୋଇଲି, ହଳଦୀବସନ୍ତର ସୁମଧୁର କାକଳି ରେଳର ଘର୍ଘର ନାଦ ଭେଦ କରି କର୍ଣ୍ଣର ତୃପ୍ତି ସମ୍ପାଦନ କରୁଥାଏ । ବକୁଳ ଓ ତମାଳ ପୁଷ୍ପର ସୌରଭ ଚାରିଆଡ଼େ ବିକୀର୍ଣ୍ଣ ହୋଇଥାଏ । ସାଢ଼େ ଦଶଘଡ଼ିକା ସମୟରେ ବାରିପଦା ଷ୍ଟେସନରେ ପହଞ୍ଚିଲୁଁ ।

ବନ୍ଧୁମାନେ ଷ୍ଟେସନରୁ ଆମ୍ଭମାନଙ୍କୁ ନେଇଗଲେ । ପୂର୍ବ ରାତିର ଘୋର ବୃଷ୍ଟି ବାରିପଦାର ଅସହ୍ୟ ଗ୍ରୀଷ୍ମକୁ ଶୀତଳତାରେ ପରିଣତ କରି

ଦେଇଥିଲି । ବନ୍ଧୁଗୃହରେ ଉଦର ପରିପୂର୍ତ୍ତି, ତପୂରେ ବିଶ୍ରାମ । ଅପରାହ୍ଣରେ ବାରିପଦା ଉଚ୍ଚ ଇଂରାଜୀ ବିଦ୍ୟାଳୟ, ମ୍ୟୁଜିୟମର ବିପୁଳ ସମାବେଶ ଓ ବେଲଗଡ଼ିଆ ପ୍ରାସାଦ ଦେଖିବାର ସୁଯୋଗ ପାଇଲି । ବିଦ୍ୟାଳୟଟି ପ୍ରକାଣ୍ଡ ହତା ମଧ୍ୟରେ ଅବସ୍ଥିତ । ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ସମୟରେ ଯେଉଁ ବିଦ୍ୟାଳୟ ଗୃହ ନିର୍ମିତ ହୋଇଥିଲା, ତହିଁରେ ସ୍ଥାନାଭାବ ହେତୁ ସ୍କୁଲଗୃହ ବଢ଼ାଇ ଦିଆଯାଇଅଛି । ବର୍ତ୍ତମାନ ଛାତ୍ରସଂଖ୍ୟା ୬୫୦ । ଉତ୍କଳର ଯେ କୌଣସି ଉଚ୍ଚ ଇଂରାଜୀ ବିଦ୍ୟାଳୟ ସହିତ ଏହାର ସ୍ଥାନ ତୁଳନୀୟ । ଏହା ବ୍ୟତୀତ ବାରିପଦାରେ ଅନେକ ପ୍ରାଥମିକ ବିଦ୍ୟାଳୟ, ମାଇନର ସ୍କୁଲ ଓ ବାଳିକା ବିଦ୍ୟାଳୟ ବର୍ତ୍ତମାନ ।

ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଦେବଙ୍କ କୀର୍ତ୍ତି ମୟୂରଭଞ୍ଜରେ ମ୍ୟୁଜିୟମର ବିପୁଳ ସମାବେଶ । ବହୁ ମୂଲ୍ୟବାନ୍, ଉତ୍କଳରେ ଦୁର୍ଲଭ, ଭିନ୍ନ ଭିନ୍ନ ଧରଣର ମ୍ୟୁଜିୟମ ଦେଖି ମୟୂରଭଞ୍ଜର ସମୃଦ୍ଧିରେ ବିମୋହିତ ହୋଇଥିଲି । ବେଲଗଡ଼ିଆ ରାଜପ୍ରାସାଦ ମଧ୍ୟ ଏକ ବିପୁଳ କୀର୍ତ୍ତି । ସୁଦୃଶ୍ୟ ଉନ୍ନତାନତ ରାଜମାର୍ଗ, ଦୂରର ରମଣୀୟ ପର୍ବତମାଳା, ବହୁଦୂରବ୍ୟାପୀ ସବୁଜ କ୍ଷେତ୍ର ଓ ଅଦୂରରେ ବକ୍ରଗାମିନୀ ନଦୀ ପରିବେଷ୍ଟିତ ସୁନ୍ଦର ଦ୍ୱିତଳ ବେଲଗଡ଼ିଆ ପ୍ରାସାଦ । ବିଶିଷ୍ଟ ଅତିଥିମାନଙ୍କ ରହିବା ପାଇଁ ମହାରାଜା ଶ୍ରୀରାମଚନ୍ଦ୍ର ଏହି ଗୃହ ନିର୍ମାଣ କରାଇଥିଲେ । ଗୃହ ମଧ୍ୟସ୍ଥ ବହୁମୂଲ୍ୟ ବିପୁଳ ସାଜସଜ୍ଜା ଓ ଉପକରଣ ଦର୍ଶନୀୟ ଏହି ପ୍ରାସାଦରେ ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ଜୀବନ୍ତ ତୈଳଚିତ୍ର ଦେଖି ଅଭିଭୂତ ହେବାକୁ ପଡ଼ିଲା । ଜଣେ ବନ୍ଧୁଙ୍କୁ ଦୁଃଖ ପ୍ରକାଶ କରିବାର ଶୁଣି ପ୍ରାସାଦର ଦ୍ୱାରପାଳ ସେହି ଦୁଃଖରେ ହୃଦୟର ଶୋକାବେଗ ବ୍ୟକ୍ତ କଲା । ଏହିପରି କେତେକ କ୍ଷୁଦ୍ର ଘଟଣାରୁ ମହାରାଜାଙ୍କ ହୃଦୟବତ୍ତାର ପରିଚୟ ପାଇଲି ।

ବାରିପଦାର ଫୌଜଦାରୀ ଓ ଦେବାନୀ ଅଦାଲତ ଗୃହପ୍ରାଙ୍ଗଣରେ ମହାରାଜାଙ୍କ ମର୍ମର ପ୍ରସ୍ତର ପ୍ରତିମୂର୍ତ୍ତି ଦେଖି ହୃଦୟ ଭକ୍ତିରସରେ ପ୍ଳାବିତ ହୋଇଗଲା । ବାରିପଦାର ଡାକ୍ତରଖାନା ଦେଖିବାର ଜିନିଷ । ସମସ୍ତ ଆୟୋଜନ ମଧ୍ୟରେ ତ୍ରୁଟିର ଲେଶ ନାହିଁ, କାର୍ଯ୍ୟର ବିରାମ ନାହିଁ, ଅପରିଚ୍ଛନ୍ନତାର ଚିହ୍ନ ନାହିଁ । ଔଷଧ ଓ ପଥ୍ୟର ବ୍ୟବସ୍ଥା ଉତ୍ତମ । ରୋଗୀମାନଙ୍କ ରହିବାର ସ୍ଥାନ ପରିଷ୍କୃତ ପରିଚ୍ଛନ୍ନ । ମୟୂରଭଞ୍ଜର କାରାଗାର କେବଳ ଉତ୍କଳରେ ନୁହେ,ସମଗ୍ର ପ୍ରଦେଶ ମଧ୍ୟରେ ଶୀର୍ଷ ସ୍ଥାନ ଲାଭ କରିଅଛି । ପ୍ରଦେଶର ଭୂତପୂର୍ବ ଶାସନକର୍ତ୍ତା ଏହି କାରାଗାର ଦେଖି ଅକୁଣ୍ଠିତଚିତ୍ତରେ ବାରିପଦାର କାରାଗାରକୁ ପ୍ରଦେଶର ସର୍ବଶ୍ରେଷ୍ଠ କାରାଗାର ବୋଲି ବ୍ୟକ୍ତ କରିଥିବା ବିଷୟ ଶୁଣିଲି ।

କାରାଗୃହର ଅଧ୍ୟକ୍ଷଙ୍କ ଅନୁଗ୍ରହରୁ ଜେଲଖାନାର ଭିତର ତନ୍ନତନ୍ନ କରି ଦେଖିବାର ସୁଯୋଗ ମିଳିଲା । ଚତୁର୍ଦ୍ଦିଗ ଏତେ ପରିଷ୍କାର ଯେ ଚାଲିଲାବେଳେ ମନେ ହୁଏ,ଯେପରି ଆମ୍ଭମାନଙ୍କ ପାଦଚାଲନାରେ ବୋଧ-ହୁଏ ମଇଳା ହୋଇଗଲା । ବନ୍ଦୀମାନଙ୍କ ସ୍ନାନ କରିବାର ସ୍ଥାନ ଓ ରୋଷାଇ ଘର ସୁନ୍ଦର ଓ ପରିଷ୍କୃତ । ଏହି ଜେଲ୍‌ରେ ପ୍ରାୟ ୨୫୦ ଜଣ ବନ୍ଦୀ ଅଛନ୍ତି; କାହାରିକୁ ବିମର୍ଷ ଦେଖି ପାରିଲି ନାହିଁ । ପ୍ରତ୍ୟେକେ ଆନନ୍ଦରେ ନିଜ କାର୍ଯ୍ୟରେ ଲାଗିପଡ଼ିଛନ୍ତି । କାହାର ପ୍ରତି ଦୃଷ୍ଟିପାତ କରିବାର ଅବସର ନାହିଁ । କେଉଁଠାରେ ନାନାପ୍ରକାର ଲୁଗା ବୁଣା ଯାଉଅଛି, ଶତରଞ୍ଜି ତିଆରି ହେଉଅଛି , ବେତ ଓ ବାଉଁଶର ପେଡ଼ି, ପେଟରା ଓ ବ୍ୟାଗ ନିର୍ମିତ ହେଉଅଛି । ମୁରୁଗା ଚାଷ କରିପାଇ, ଏହି ମୁରୁଗା ସାହାଯ୍ୟରେ ଖଟର କୋର, ଦଉଡ଼ି ଓ ସୁତୁଲି ତିଆରି ହେଉଅଛି । ପାଉଁରୁଟି ଓ ବିସ୍କୁଟ ପ୍ରଭୃତି ଖାଦ୍ୟ ପଦାର୍ଥ ବହୁଳ ତିଆରି ହେବାର ମଧ୍ୟ ଦେଖିଲି ।

ମୟୂରଭଞ୍ଜର ବଡ଼ ବଡ଼ କର୍ମଚାରୀମାନଙ୍କ ଆବାସଭବନ ବୃଟିଶ ଶାସିତ ଜିଲ୍ଲାକୁ ଟପି ଯାଇଅଛି । ମୟୂରଭଞ୍ଜର ପ୍ରତ୍ୟେକ ଥାନାଗୃହ, ସ୍କୁଲଗୃହ ମୋଗଲବନ୍ଦୀର ଥାନା ଓ ସ୍କୁଲଗୃହ ଅପେକ୍ଷା ବହୁଗୁଣରେ ଶ୍ରେଷ୍ଠତର । ବାରିପଦାରେ ଖ୍ରୀଷ୍ଟିୟାନମାନଙ୍କର ଗିର୍ଜା, ମୁସଲମାନମାନଙ୍କର ମସଜିଦ୍ ଓ ବ୍ରାହ୍ମ ମନ୍ଦିର ବର୍ତ୍ତମାନ । ହିନ୍ଦୁ ମୁସଲମାନ ବିରୋଧ ଏଠାରେ ନାହିଁ । ପ୍ରତ୍ୟେକେ ସ୍ୱଚ୍ଛନ୍ଦରେ ନିଜ ନିଜର ଧର୍ମମତ ପୋଷଣ କରି ଚଳୁଛନ୍ତି । ଜଗନ୍ନାଥ ମନ୍ଦିର ଓ ଗୁଣ୍ଡିଚାଯାତ୍ରା ପାଇଁ ଏଠାର ବଡ଼ଦାଣ୍ଡ ପୁରୀର ଅନୁକରଣରେ ନିର୍ମିତ । ଏଠାରେ ଗୋଟିଏ ବଡ଼ ପୁସ୍ତକାଳୟ ମଧ୍ୟ ଅଛି । ନାନା ଭାଷାର ଆଧୁନିକ ଓ ପୁରାତନ ବହୁ ପୁସ୍ତକ ଏଠାରେ ସାଧାରଣଙ୍କ ବ୍ୟବହାର ନିମନ୍ତେ ରକ୍ଷିତ ଅଛି ।

ସମ୍ପ୍ରତି ରାଜଭବନର କିୟଦଂଶ ଦେଖିବାର ସୁଯୋଗ ମିଳିଥିଲା ଓ ପୁରାତନ ସୌଧର ସଂସ୍କାର ହେଉଅଛି । ହଠାତ୍ ଦେଖିଲେ ଏହାର କଳନା କରିବା ବଡ଼ କଠିନ । ଉପଯୁକ୍ତ ପିତାଙ୍କ ସୁଯୋଗ୍ୟ ସନ୍ତାନ ଲେଫ୍ଟନେଣ୍ଟ ମହାରାଜାଙ୍କ ଉଚ୍ଚାକାଙ୍କ୍ଷାର ପରିଚୟ ପାଇ ମୁଗ୍ଧ ହୋଇଥିଲୁଁ, ସେ କେବଳ ରେଭେନ୍‌ସା କଲେଜ ଓ ଛାତ୍ରାବାସରେ ବୈଦ୍ୟୁତିକ ଆଲୋକର ଆୟୋଜନ ଓ କଟକ ଉତ୍କଳ ସାହିତ୍ୟ ସମାଜ ମନ୍ଦିର ନିର୍ମାଣ କରାଇ ଦେଇ ନିଶ୍ଚିନ୍ତ ନ ଥିଲେ । ଇଚ୍ଛା ଥିଲା, ଏହି ବର୍ଷ ବାରିପଦାରେ ଜଳ କଳର ବନ୍ଦୋବସ୍ତ କରିବାକୁ । କିନ୍ତୁ ବିଧିର ଇଚ୍ଛା ଅନ୍ୟ ପ୍ରକାର । ଚିରରୁଗ୍ଣ ଅବସ୍ଥାରେ ଦୁର୍ବହ ରାଜକାର୍ଯ୍ୟରେ ଅଦମ୍ୟ ପରିଶ୍ରମ କରି, ସେ ସମୟ ସମୟରେ କ୍ଷୁଧା ତୃଷ୍ଣା ଭୁଲି ଯାଉଥିଲେ । କାର୍ଯ୍ୟାନ୍ତରରେ ବମ୍ବେଇ ସହରରେ ଉପସ୍ଥିତ ଥାଇ ଅକସ୍ମାତ୍ ଦୁରାରୋଗ୍ୟ ଧନୁଷ୍ଟଙ୍କାର ରୋଗାକ୍ରାନ୍ତ ହୋଇ ମହାରାଜ ପୂର୍ଣ୍ଣଚନ୍ଦ୍ର ଦେବବାସୀ, ପ୍ରଜା ଓ ତଥା ଉତ୍କଳର

ଜନସାଧାରଣଙ୍କୁ ଶୋକାଭିଭୂତ କରି ୨୮ ବର୍ଷ ବୟସରେ ଗତ ୨୧।୪।୨୮ ତାରିଖରେ ଇହଲୀଳା ସାଙ୍ଗ କରିଅଛନ୍ତି ।

ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ଦ୍ୱିତୀୟ ପୁତ୍ର ଜ୍ୟେଷ୍ଠଶ୍ରୀ ପ୍ରତାପଚନ୍ଦ୍ର ଭଞ୍ଜ ଦେବ ବର୍ତ୍ତମାନ ମୟୂରଭଞ୍ଜର ମହାରାଜା । ଏ ମହାଶୟ ପଣ୍ଡିତ ଓ ମେଧାବୀ; ଅଲ୍ଲାହାବାଦ ବିଶ୍ୱବିଦ୍ୟାଳୟରୁ ବି. ଏସ୍‌ସି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ମହାରାଜା ପ୍ରତାପଚନ୍ଦ୍ରଙ୍କ ଅମଳରେ ମୟୂରଭଞ୍ଜ ତଥା ଉତ୍କଳର ଶ୍ରୀ ଉତ୍ତରୋତ୍ତର ଉନ୍ନତି ଲାଭ କରିବ, ସନ୍ଦେହ ନାହିଁ ।

ବାରିପଦାର ରାସ୍ତା, ବିଦ୍ୟାଳୟ, କାରାଗୃହ, ପୁସ୍ତକାଳୟ, ଚିକିତ୍ସାଳୟ ଦେଖିଲେ ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ମୂର୍ତ୍ତିମନ୍ତ ଦେଖିବାକୁ ମିଳେ । ସେହି କ୍ଷଣଜନ୍ମା କେଉଁ କୁହୁକ ବଳରେ କୋଡ଼ିଏ ବର୍ଷ ମଧ୍ୟରେ ଗୋଟିଏ ଜଙ୍ଗଲ ରାଜ୍ୟକୁ ଆଧୁନିକ ଧରଣର ଜିଲ୍ଲାରେ ପରିଣତ କରି ଦେଇଥିଲେ, ତାହା ଥରେ ମାତ୍ର ବାରିପଦା ଦର୍ଶନରେ ବୁଝାଯାଏ । ସେହି ଆଦର୍ଶ, ସେହି କର୍ମକୁଶଳତା ଓ ପ୍ରଜାପାଇଁ ଅହରହ ସେହି ବ୍ୟାକୁଳତା ଚିରଦିନ ପାଇଁ ମୟୂରଭଞ୍ଜକୁ ଉନ୍ନତ କରି ପାରିଅଛି ଓ ସେହି ଧର୍ମର ପ୍ରଭାବ ମୟୂରଭଞ୍ଜ ରାଜପରିବାରକୁ ଚିରଦିନ ଶୁଭ୍ର ନିର୍ମଳ କରିବାରେ ସହାୟତା କରିବ, ଏହା ଆମ୍ଭମାନଙ୍କର ଦୃଢ଼ବିଶ୍ୱାସ ।

ଥରେ ମାତ୍ର ବାରିପଦା ଦର୍ଶନ କରି ଆମ୍ଭେମାନେ ତାହା ପ୍ରତି ଚିରଦିନ ପାଇଁ ଆକୃଷ୍ଟ ହୋଇ ପଡ଼ିଅଛୁଁ । ପ୍ରଭୁଙ୍କ, ମଙ୍ଗଳମୟ ପ୍ରେରଣା ଶୁଭପ୍ରଦ ହେଉ ।



# ଉପସଂହାର



ମହାରାଜା ଶ୍ରୀରାମଚନ୍ଦ୍ର ଓଡ଼ିଆର ଆଧୁନିକ ଯୁଗର ଆଦର୍ଶ ରାଜା । ତାଙ୍କ ପରି ତ୍ୟାଗୀ, କର୍ମବୀର ଓ ହୃଦୟବାନ୍ ବ୍ୟକ୍ତି ଏ ଯୁଗରେ ଉତ୍କଳବକ୍ଷ ମଣ୍ଡନ କରିଅଛନ୍ତି କି ନା ସନ୍ଦେହ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଯେଉଁ କର୍ମପ୍ରବାହ ବହାଇ ଅଛନ୍ତି, ଭାବିଲେ ସ୍ତମ୍ଭୀଭୂତ ହେବାକୁ ହୁଏ । ବର୍ତ୍ତମାନ ସେ କର୍ମପ୍ରବାହ ନାହିଁ, ସେ କମନୀୟ ଦୀର୍ଘ ବପୁ ଆଉ ଦେଖିବାକୁ ନାହିଁ, ସେ ନିର୍ମଳ ଶୁଭ୍ର ହସ ନାହିଁ, ସବୁବେଳେ ପ୍ରଜାର, ରାଜ୍ୟର, ତଥା ଦେଶର ମଙ୍ଗଳନିମିତ୍ତ ସେ ବ୍ୟାକୁଳତା ଆଉ ନାହିଁ, ଅଛି କେବଳ ସେହି ସବୁର ସ୍ମୃତି । ସେହି ସ୍ମୃତି ଜାତିର ଅମୂଲ୍ୟ ସମ୍ପଦ । ତାହା ଦେଇ ଜାତି କର୍ମକ୍ଷେତ୍ରରେ ଅଗ୍ରସର ହେଉ । ତାଙ୍କ ଜୀବନର ମହନୀୟ ଆଦର୍ଶ ଆଜି ଓଡ଼ିଆ ପ୍ରାଣରେ ନବ ବଳ ସଞ୍ଚାର କରୁ ।

ଓଡ଼ିଆର ପୂର୍ବ ଗୌରବ ଅଛି— ଅତୀତ ଯୁଗର ଶିଳ୍ପ, ବୀରତ୍ୱ ଓ ମହାନୁଭବତା ଅଛି, ମାତ୍ର ଜାତିର ପ୍ରାଣରେ ସେ ଶିଳ୍ପ ଓ ସେ ବୀରତ୍ୱର ସ୍ପନ୍ଦନ ଅତି କ୍ଷୀଣ । ତାହା ନ ହୋଇଥିଲେ, ଜାତି ବୀରପୂଜା କରିବାକୁ ଶିଖିଥିଲେ, ଶ୍ରୀରାମଚନ୍ଦ୍ରଙ୍କ ମୃତ୍ୟୁ ପରେ ଏତେ ଦିନ ଏପରି-ଭାବରେ ଅତିବାହିତ ହୋଇ ଯାଇ ନ ଥାନ୍ତା । ଯେ ପର୍ଯ୍ୟନ୍ତ ଜାତି ତାର କର୍ମବୀରମାନଙ୍କ ଆଦର୍ଶ ଅନୁକରଣ ନ କରିଛି, ସେମାନଙ୍କ ଜୀବନସ୍ମୃତିକୁ ପବିତ୍ର ମନେ କରି ପାଳନ ନ କରିଛି, ସେତେଦିନ ଜାତିର ଉତ୍ଥାନ ଅସମ୍ଭବ ।

ଅତି ମଧ୍ୟ ସମୟ ଯାଇ ନାହିଁ । ଓଡ଼ିଆ ଅଜ ସବୁ କ୍ଷେତ୍ରରେ ତାର ଦାବୀ ବ୍ୟକ୍ତ କରିବାକୁ ଶିଖିଅଛି । ଏପରି ସମୟରେ, ଏ ମାହେନ୍ଦ୍ର ବେଳାରେ ଅମ୍ଭମାନଙ୍କୁ ଆଉ ଉଦାସୀନ ହୋଇ ରହିବାକୁ ହେବ ନାହିଁ । ନବଯୁଗର କର୍ମବୀର ଶ୍ରୀରାମଚନ୍ଦ୍ରଙ୍କ ଜୀବନସ୍ମୃତିକୁ ଜାତୀୟ ସ୍ମୃତି ବୋଲି ଜ୍ଞାନ କରିବାକୁ ହେବ । ଗୃହେ ଗୃହେ, ଗ୍ରାମେ ଗ୍ରାମେ, ନଗରେ ନଗରେ, ତାଙ୍କ ପୁଣ୍ୟମୟ ଜୀବନର ଆଦର୍ଶ ପତାକା ଉତ୍ତୋଳନ କରିବାକୁ ହେବ । ଓଡ଼ିଶାର ରାଜା ପ୍ରଜା ଧନୀ ଦରିଦ୍ର ସମସ୍ତଙ୍କୁ ତାଙ୍କ ପବିତ୍ର ଜୀବନ ଆଦରରେ ଗ୍ରହଣ କରି, ତାଙ୍କର ଆଦର୍ଶକୁ ଆଗରେ ରଖି କାର୍ଯ୍ୟରେ ଅଗ୍ରସର ହେବାକୁ ହେବ । ପ୍ରତି ବର୍ଷ ତାଙ୍କ ଶ୍ରାଦ୍ଧବାସର ଜାତିକୁ ପ୍ରତିପାଳନ କରିବାକୁ ହେବ । ପ୍ରତି ବିଦ୍ୟାଳୟରେ ତାଙ୍କର ଗୁଣ ଗାନ କରି ବାଳକ ବାଳିକାମାନଙ୍କୁ ଉଦ୍ବୋଧିତ କରିବାକୁ ହେବ ।

ବୀରପୂଜା କେବଳ ବୀରପୁରୁଷଙ୍କ ପ୍ରତି ସମ୍ମାନପ୍ରଦର୍ଶନ ନୁହେ— ତାହା ଜାତିର, ସମାଜର କର୍ତ୍ତବ୍ୟପାଳନ । ଏହା ମନେ କରି ଅମ୍ଭମାନଙ୍କୁ ଶ୍ରୀରାମଚନ୍ଦ୍ରଙ୍କ ପୂଜା କରିବାକୁ ହେବ । ତେବେ ଯାଇଁ ଜାତି, ତଥା ସମାଜ ତାର ନିଜର କର୍ତ୍ତବ୍ୟ କରି ଧନ୍ୟ ହେବ । ତାଙ୍କ ପୁଣ୍ୟ ପ୍ରତିଭାର ଉଦ୍ଦୀପନା କେବେହେଁ ବୃଥା ହେବାର ନୁହେ । କୌଣସି ମହାତ୍ମାମାନଙ୍କ ଜୀବନ ଏ ଜଗତରେ କେବେ ବୃଥା ହୋଇ ନାହିଁ । କାଳେ ସମୟ ଆସିବ, ସେହି ପ୍ରତିଭାର ଉଦ୍ଦୀପନା ଯୋଗୁଁ ଦେଶରେ ଶତ ଶତ ଶ୍ରୀରାମଚନ୍ଦ୍ର ଜନ୍ମଗ୍ରହଣ କରି ଦେଶର ମୁଖ ଉଜ୍ଜ୍ୱଳ କରିବେ ।

ସମାପ୍ତ



Printed by M Kar, The U. S. Press, Cuttack.